

ଲୋକ କଲ୍ୟାଣ ଗ୍ରନ୍ଥ ମାଳା

# ଚାଷ ଯା'ର ଜମି ତା'ର

ସାମାଜିକ ଶିକ୍ଷା ବିଭାଗ, ଓଡ଼ିଶା ସରକାର

ଲୋକକଲ୍ୟାଣ ଗ୍ରନ୍ଥମାଳା

ଏକାଦଶ ଖଣ୍ଡ

# ଚାଷ ଯା'ର ଜମି ତା'ର

( ଏକାଙ୍କିକା )

ଅନୁବାଦ କର୍ତ୍ତା

ଶ୍ରୀ ଶ୍ୟାମସୁନ୍ଦର ଦାସ

# ଚାଷ ଯା'ର, ଜମି ତା'ର

---

## ପ୍ରଥମ ଦୃଶ୍ୟ

### ମଞ୍ଜଗଇପୁର ଗାଁ ଦାଣ୍ଡ

ଫସର ଫାଟିଗଲଣି—ଜଳଖିଆଇଁ ମାରି ନାହିଁ—ମଣିଷଙ୍କ ଆଖିରୁ ପୂରାପୁରି ନିଦର ନିଶା ଯାଇ ନାହିଁ । ଅଳସରେ ଡେଣା ଫେଟିପିଟି କୁଆଟିଏ ଡାକଦେଇ ଗଲା—"କାଆ,କାଆ"—ଗହଳ ଅମ୍ବତୋଟା ମଝିରୁ ସେଇତିକିବେଳେ କୋଇଲିଟା ଡାକ ଉଠିଲା—"କୁଉ,କୁଉ"—ହୁଉ ହୁଉ ହୋଇ ସାହାନ୍ତ ପହରର କାଳୁଆ ପବନ ଝିଲକାଏ ଗଛଗୁଡ଼ାକୁ ଥରାଇ ଦେଇ ଗଲା । ତା'ରି ପଛେ ପଛେ ଭାସିଆସିଲା ଦୂରରୁ ହଳିଆ ଭାଇର ଗୋଟିଏ ନିଖୁଣ ଗାଉଁଲି ଗୀତ—ଗୀତଟି କ୍ରମେ ନିକଟରୁ ନିକଟତର ହେଲା କାନ୍ଧରେ ଲଙ୍ଗଳ ପକାଇ କଳା ମୁଚୁମୁଚୁ ହଳିଆ ଟୋକାଟିଏ ମନ ମଉଜରେ ଗାଇ ଗାଇ ଗଲା ସେହି ଗୀତଟି—ତା'ପରେ ଟୋକାଇ ମୁଣ୍ଡେଇ ହାତରେ ଦାଆ ଧରି ଆଉ ଜଣେ; କାନ୍ଧରେ କୁରହାଡ଼ି ପକାଇ ଆଉ ଜଣେ; କରତ, ବଟାଳି ହାତ ହତିଆର ଧରି କରତିଆଟିଏ; ଭୁଜା ଟୋକେଇ ମୁଣ୍ଡରେ ଥୋଇ ହାତରେ କଡ଼ ହଲାଇ—ହଲାଇ ଗୁଡ଼ିଆଟିଏ—ଏହିପରି ଗୋଟିଏ ଗୋଟିଏ ଲୋକ ଚାଲିଲେ ସେଇ ଗାଁ ଦାଣ୍ଡେ ଦାଣ୍ଡେ—ସମସ୍ତେ ଯେପରି ସେଇ ଗୀତଟିର ଭାଗ ନେଇଛନ୍ତି । ସମସ୍ତଙ୍କ ମୁହଁରେ ଗୀତଟିର ବାଉନ୍ଲ

ଅଂଶ ରୁଗ୍ଣାଯୁ୍ଚିତ—ମୌଳିକ ସ୍ୱର ବିନ୍ୟାସର ପ୍ରଲେପରେ ପ୍ରଭାତୀ ବାୟୁମଣ୍ଡଳ ସ୍ନିଗ୍ଧ ଓ ଉନ୍ମାଦିତ—ପ୍ରତ୍ୟେକ ମାନବର ଚରିତ୍ର ଆବେଶରେ ଆଣିଛି ଅପୂର୍ବ ଜାଗରଣୀ ହୋଇ ଗୀତଟି—କର୍ମପ୍ରବଣତାର ଅନାବିଳ ଉତ୍ସ ଯେମିତି ଭରି ଦେଉଛି ଆଳସ୍ୟପରାୟଣ ହୃଦୟର ସ୍ତରେ ସ୍ତରେ···

## ଗୀତ

ଓ··· ମାଟି ମଣିଷରେ
କାମର ବେଳ ତୋର ଅଇଲା ରେ ଅଇଲା
ରଙ୍ଗେଇ ଉଷା ଫୁଟେଇ ଭଲେ (ତା'ର) ଫଗୁମୁଠାକ
ମାଇଲା ରେ ମାଇଲା,
ନେଇକ ଦେ ସେଣ୍ଡ ଆଉ କାହିଁକି ଫିଟେଲା ଆଖି
ଘାଇଲା ରେ ଘାଇଲା । ୦ ।

କୁଆଁରୀ ଡର ଗଲଣି ଝାଁଙ୍କେ କାଳିଅନ୍ଧାରୀ ପାରେ,
ସୁନେଲି ଛଇ ଚହଟି ହେଲା ସରଗ କାନ୍ଥି ତଳେ;
ମାଟି ମାଆର ସବୁଜ ଶୋଭା (ତୋ'ର) ସାସ୍ତ ପରମ
ଛାଇଲା ରେ ଛାଇଲା । ୧ ।

ଗୃହୀଁ ଏ ସାହାନ୍ତ୍ର ଜଗତରେ, ଧନରେ···ଧନରେ,
ବେଳ ସରିଲେ ଆଉ ନ ଥାଏ ମାନରେ;
ବେଳହୁଁ ଚେତ ନ ପାହୁଁ ଗତ ହେଉଥା' କାମ ଯାହା ରଇଲା
ରଇଲା ରେ ସଇଲା
ତୁଇଁ ତୋହର ଲଙ୍ଗଳ ମୁନ ମାଟି ଦୁନିଆ ଚେଇଁଲା ରେ ଚେଇଁଲା । ୨ ।

—୦—

(ଏତକବେଳେ ତରବର ହୋଇ ମାରକଣ୍ଡିଆ ପହଞ୍ଚିଲା—ଗରିବ ଚଷାଟିଏ—ମୁଣ୍ଡରେ ଚିର୍ କୁଟି ଗାମୁଛା ଖଣ୍ଡେ ଭିଡ଼ା ହେଉଛି—ମଯିଆ କରିଆ ଖଣ୍ଡିକ ଦିହରେ ବେଢ଼ା ହେଉଛି—ଗୋଟିଏ ହାତରେ

ପାଞ୍ଚଣ ବାଡ଼ି, ଅନ୍ୟହାତରେ ଧରିଥିବା ଲଙ୍ଗଳଟି କାନ୍ଧରେ ପଡ଼ିଛି—ବଡ଼ ବ୍ୟସ୍ତ ହୋଇ ନେପଥ୍ୟକୁ ବାରମ୍ବାର ନିରୀକ୍ଷଣ କରି କହିଲା—)

ମାରକଣ୍ଡିଆ—ହେଏ,ହେଏ, ହେଏ—ଅଃ···ଅଃ···ଅଃ—ଆ' ଆ'—ମଲା, ମଲା, ଗୋସେଇଁ ଖିଆ, ନିବଇଁଶିଆ ହଡ଼ାଗୋଠାକୁ ତାକୁ ତାକୁ ପଧାନ ବାଇରେ ପଶି ପାଉଛି—ଦେଖ,ଦେଖ୍,ଦେଖ୍—ବାହାରିଲା ନା ନାଇଁ—ଅହ୍ଃ···ଅହ୍ଃ···ଅହ୍ଃ ଓଲିଆ, ଅଲକ୍ଷଣୀ ଗୁହାରରୁ ଫିଟ୍ ଫିଟ୍ ବାର ଜୋଗା ମୁହଁ ମାରି ମାରି ଯିବ। ରହ୍ଃ,ରହ୍ଃ, ରହ୍ଃ—ଇମିତ ଗୋଗୋଛିଆ ପିଟେମି ଥୋବରକୁ—ପିଟେପିଟେପିଟେ ଏକାଦେଦେନେ ଖମସ୍ତ ନ କରିଛି ତ ମୋ ନାଁ ନାଇଁ ମାରକଣ୍ଡିଆ।

( ଏତିକବେଳେ ପହଞ୍ଚିଲା "ଓଥଲି", ଗାଁର ଗୋଟିଏ ଅଭିନେତା ଚଷ—ବୁଝିଅ, ଏବେ ମାର୍କଣ୍ଡିଆ ସହିତ ସେ ଥୁଆ ହୋଇ ହେଉଛି—ଗାଁ ଲୋକେ କହନ୍ତି—ଖୁଣ୍ଟି ଖାଇ ନମୂଳି ସେ—କଣ୍ଟିନାଛି, କେଛି ନାଛି ତା'ର ମାନ କାଉଁରି—ତୁଆଁ ଯୌବନର ଲାବଣ୍ୟ ଲହଡ଼ିରେ ସବୁ ଖଣ୍ଡ ଟାର ଧୋଇ ଯାଇଛି—ଯାବନ ବହେଟି ତେଲ ନିଗିଡ଼ିଲା ପରି ଚକ୍ ଚକ୍ ମାରୁଛି—ମାଙ୍ଗରେ ସିନ୍ଦୁର କଳାଟେ ଟିକ ଲାଲ ଫିତାଟି ପରି କପାଳ ଉପରକୁ ଓହ୍ଲ ପଡ଼ିଛି—କାନରେ ଯୋଡ଼ିଏ—ଲବଙ୍ଗ, ନାକରେ ଲୁଡ୍‌କୁଟିଏ—ବେକରେ ମଲ୍ଲିକଢ଼ୀ ମାଳ—ହାତରେ କାଚ ଆଉ ଶଙ୍ଖାମିଶା ପିତାଖଡ଼ୁ ବୁ'ପଟ—ଗୋଡ଼ରେ ରଯର ଗଣ୍ଠି ବଳା ହଳେ—ପିନ୍ଧିଛି, ଦେଖା ନାଆ ଲାଲି ଶାଢ଼ୀ ଖଣ୍ଡେ—ମାର୍କଣ୍ଡିଆକୁ ଡାକ ଡାକ ପହଞ୍ଚିଲା )

ଓଥଲି—ହଇହେ—ହେଏ—ମଲା, ଶୁଣୁଚି, ମଲା, କାନ କଅଣ ଅଛି ଯେ ଶୁଣିବ, ସେଥିରେ ତ ପଥର ପଡ଼ିଛି—

ମାର୍କଣ୍ଡିଆ—କାଇଁ କଲେ କାଇଁକି ? ଏତେ ହରି ପଡ଼ିଛି। ପକ୍ଷୀଷ ନ ବାହାରୁଣୁ ବଅଲଗୁଡ଼କୁ ଫିଟେଇ ଦେଲୁ ମେ ହେଇତ ପ୍ରା ବାଡ଼ି ତା ବାଡ଼ିରେ ପଶି ଧଯାନସଣ କରୁଛନ୍ତି ସେ ଗୁହକୁ

ଅନେଇଁମି କି ତୋର କଅଁରିଆ ସୁଆଗ ଡାକକୁ କାନେଇଁମି କଣ ?

ଓଥସ୍ତି—ହେଏ, ତମକୁ ମୋ ସ୍ୱଣଟି, ଏଇଠି ନେହୁସ୍ତ ହଉଚି—ପୁଞ୍ଜିଏ ଛତ ଦେଇଚି ମୁଁ—ତୋସ୍ୱଣି କଁସାଳ ତଳତଳ କରି ତୋଳି ଦେଇ ଟୈଅଠି ବାହାରି ଆସିବ ଆସ—ପାଣିଖସ୍ତା ସ୍ତୁଇଁ ସ୍ତୁଇଁ କିନା ମାଡ଼ିଆସି ତୋଠି ଶୁଖେଇ ଦଉଚିସଗ—ଆସ—

ମାର୍କଣ୍ଡିଆ—ଆହା, ହା, ହା,—ଦଇଚ୍ଛା···ଖାଲି ଥପ ଥପ ହୋଇ ନଗିଡ଼ି ପଡ଼ୁଛି—ଭିଲେ ଅଣଉଦିଆରୁ ତେତେ ସଗ ଗେଧେଉଚି—ବେଳଏ ବାଢ଼ି ଦେଏ, ମୁଁ ହରକୁ ଯିମି—ଘର ଓରିଆ ହଉଚି, ଗୁହାର ପୋଛୁ ହଉଚି—ବାସନ ମଞ୍ଜା ହଉଚି—

ଓଥସ୍ତି—ମଲା—ଇମିତ ଅଲିଆ ମରଦ—ବାସୀ ବାସନ ମାଞ୍ଜିଲେ ତ କଁସିଏ ବାଢ଼ିମି—ଅମଞ୍ଜା ବାସନରେ ଖାଇଲେ ପା' ଆଇଷ ହାନି—

ମାର୍କଣ୍ଡିଆ—ଓହୋ, ହୋ, ହୋ—କଇଲା, ଆଇଁଷ ହାନି—କଲୋ—"ଡଷା ହୁଡ଼ିଲେ ବରଷେ" ତୋର ଏଇ ଶୁଖିଲା ପଧିବକୁ ତକେଇମି ତ ତେଣେ ଦି କୁରରୁ ଯିମି । ଖାଉନ୍ଦ ଘିଅଣା ଦେଇ ସଢ଼ାନି ସାତପିଢ଼ିର ଶିସ୍ତଧ ବାଢ଼ିବ । ଏଣେ ଓରିକିଆ ଯାହା ଦି' ସ୍ତୃରିମାସ ପେଇ ତୋସ୍ତଣି କରି ଚଳୁଚି—ସେତକ ବି ଯିବ । ଯା, ଯାଃ ( ଆଗେଇ ଗଲା )

ଓଥସ୍ତି—ମଲା, ଶୁଗୁଚି—ଏଡ଼ିକି ନ କାଠମରଦ—ଗୁଣ ପକେଇଲୁ—ଯେତେ କ'ଣ ଠିକିଏ ନୋଭ ନାଗୁ ନାଇଁ—

ମାର୍କଣ୍ଡିଆ—ଜାଇଁଲୁ—ଓଥସ୍ତି—ତମ ମାଇକିନା ଜାତର ଏଇ ବଦ ପରକୁତି ପାଇଁ ମୋ ହାଡ଼ ଜରେ—ଯେତେକ ଅବଗୁଣ, ମେତେକ ଅଡ଼ଗିଆ କଥା ଦେଖିବ ମାଇପିଙ୍କଠି —

ଓଥଗ୍ରୀ—ଓହୋ, ହୋ—ମରଦ ଗୁରାଙ୍କ ତ ଖାଲି ଧରମ ସୁଜେଷ୍ଟି—
ହଲଲା ପାଣିରେ ଗୋଡ଼ ବୁଡ଼ାନ୍ତୁ ନାହିଁ । ତମକୁ ହଙ୍କାରେ
ବାରେ କଇଚି—ଯେମିତେ ଝାଙ୍କୁଆରେ ପିଠିବାଁ ପଡ଼େ,
ଆଉ ଏଣିକି ମୋ ନାଁ ଧରିବ ନାହିଁ—ଫେଣେ ସେଇ
ଓଥଗ୍ରୀ···ଓଥଗ୍ରୀ···ଓଥଗ୍ରୀ···

ମାର୍କଣ୍ଡିଆ—ତୁଇ କ'ଣ ମୋର ଗୁରୁ ଗୋସେଇଁ କି ? ନାଁ ଧଇଲେ
ନେମିତେ ପାତେକ ନାଗିବ । ଏଇଯା କଅ—ନାଁଟା ତୋର
ସିମିତି ଅବାଗିଆ—ଡାକଲେ ତେତେ ନାଜ ନାଗେ ।

ଓଥଗ୍ରୀ—ଆଉ କିଁ ? ମୋ ବାପ ବୋଉ ଏଇ ନାଁଆ ରଖିଥିଲେ ଯେ
—ସିଏ ତ ଇମିତି ଆଦରରେ ବଢେଇଥିଲେ ଯେ ମୋ ନାଁ
ଦେଇଥିଲେ "ଆଦୁରୀ"—ତେମେଇ ଠାପଷ୍ଟରେ ଗ୍ରେପଷ୍ଟ
ହେଇ ତ କୁ ଡାକୁ "ଆଦୁରୀ"କୁ "ଓଥରୀ" କଲ । ତମ
ଦେଖା—ଦେଖି ଆଉରି ପାଁ ଜଣ ବ— ।

ମାର୍କଣ୍ଡିଆ—ଜଲେ, ଗୁଣ ଜାଣି ଡାକୁଥେଲି କି, ଖାଲି କଣ ମାହା-
ରିଆକୁ—ତୁଇ ସିମିତି ଅଧା ତାଳଗଛ ଧାଙ୍ଗିଡ଼ିଟାଏ, ଓଥଗ୍ରୀ
ହେଇ ବଇଥେଲୁ ବେଳିତ—ଆଲେ ଦେ'ଖେ, ଓଥଗ୍ରୀ,
ଓଥଗ୍ରୀ ଡାକଲେ କଣ ହେଲା ! "ଓଥଗ୍ରୀ" କରଙ୍କ ତୋ
ଠଉଁ ପୋଛି ତେତେ ମୁକୁରେଇ ଫେଣେ ଘରକୁ ଘରଣୀ
କଲି ନା—

ଓଥଗ୍ରୀ—ଆହା, ହା, ହା—ଘରକୁ ଘରଣୀ କରି ଫେଣେ ଓଥଗ୍ରୀ
ଡାକୁଛ । ନାଜ ନାଗୁ ନାହିଁ ।

ମାର୍କଣ୍ଡିଆ—ନାଜ ! ନାଜ ନାଗୁଛି ବୋଲି ଦେଖୁନୁ ବାଠ ମଟିରେ
ସୁଗୁଡ଼ି କରୁଛି । ସକାଳୁ ଗୋଟାଏ ଅନୁକୂଳରେ ବାହାରି-
ଥେନ—ତୁ ଅମଙ୍ଗୁଳିଆଣୀଟା କାହିଁକି ପଛରୁ ଡାକ ପକେ-
ଇଲୁ କହନି ?

ଓଥଗ୍ରୀ—ହଉ, ମୁଁ ଅମଙ୍ଗୁଳୀ ହେନେ ହେଲି, ତେମେ ଆସିବଟି,

ଚୁଞ୍ଜିଏ ଗିଳି ଦେଇ ଦ' ଢୋକ ତୋରାଣୀ ପିଇ ଚାଲିଯିବ ।

ମାର୍କଣ୍ଡିଆ—କାଇଁକି ଉଥରା, ଟେଟେଡ ଝାପରା ନାଗିଚି ଲୋ—

ଉଥରା— ପେଟଣେ କଇଲ ଉଥରା···

ମାର୍କଣ୍ଡିଆ—ଆରେ ଯାଆମଁ—ହୋଉବ ରଉନାଇଁ—ଆଲୋ ଚେପରା, ଏତକବେରେ ଆଣ୍ଟୁଆ ହୋଇ ଚଷାପୁଅ ଯେବେ ମୁଣ୍ଡଝାର ଭୁଣ୍ଡରେ ମାରିଥବ, ଗହୀର ହୁର ଦ' ଚାରି ଗାରେ ଘୋଷାରି ଦେଇ ଥେନେ ଆଉ ଧାକ ନ ଥବ । ଅଚ୍ଛୁତ ପଇଡ଼ା, ନୋକେଇ, ମକରା, କାରିଆ—କେତେବେରୁ ଗଲେଣି—ଦେଖିଛୁଁନିକ ? ତାଙ୍କର ଦ' ଦ' ବେରହା ହୁର ସରିଥବ, ମୁଁ ଯାଇ ଅନୁକୂର କରିମି । ସେମାନେ ହୁର ସାରି ବାହୁଡ଼ିଲା-ବେଳାକୁ ମୁଁ ଘୋଷାରୁଥିମି—ହୁଡ଼ା ବଅଲ ହୁରକ ଉଦୁଣ୍ଡିଆ ଖରାରେ ଫାଁ ଫାଁ ହଉଥେବେ । ନା—ନା ଏଇଟା ତୋର ପସନ୍ଦ—ଏଇଥିପେଇଁ ତୋ ଉପରେ ମୋର······ ।

ଉଥରା— ହାଡ଼ ଜରେ, ନା ? —ହଉ—ମୋର କାଇଲି ହେଇଚି—ଓଦର ସମତୁଲ କରି ଯିବାକୁ କଇଲି ବୋଲି ମୋ ଉପରେ ଏତେ ଖପା—ହଉ, ମୋ କଥା ମୁଁ ଫେରେଇ ନଉଚି ଲୋ ମା—

ତେବେ ଅନୁକୂର କର (ଅଭିମାନରେ ଚାଲି ଯାଉଥିଲା) ।

ମାର୍କଣ୍ଡିଆ—ଆଲୋ ଉଥ—ନାଇଁ ନାଇଁ···ହେଏ । ଶୁଉଣୁ, ଆମେ ହେଲୁଁ ଚଷାକୁର, କାଉ କାଆ କଲା ବେରକୁ ଆମେ ଯାଇ ବିଲରେ । ଧନ, ଦରବ, ଥାଉ, ସମ୍ପତ୍ତି ସବୁଯା' ଆମର ସେଇ ବିଲ ଲୋ—ଝାର ନାର ହେଇ ଯିମିତିଁ ଚାରିମାସ ବହି-ମିହନ୍ତ କରିବୁ; ସିମିତ ଆଠମାସ ଗୋଡ଼ ନମ୍ବେଇ ବସିବୁ । କାଇଁକି ଉଥ, ମଲା, ମଲା ତୋ ନାଁଟା ତ ଖାଲି ଜିଭ ଅଗକୁ ନଟକ ପଡ଼ୁଚି, ମୁଁ କଣ କରିବି କହ । ହଉ, ତୁ ଝିଅଝପଟ କଙ୍ଗାରି ମାଆ ଗଡ଼ିଆରେ ବୁଡ଼ଟାଏ ମାରି ଆସ୍ମି

ସେ ତୋଫାଣୀ ଜହାଜରେ ବସିଯିବୁ ଗଲୁ । (କହି କହି ଚାଲି ଯାଉଁ ଯାଉଁ—ଟିକିଏ ଦୂରରୁ) ଓଥଗ୍ରୀ ଲୋ କଅଁର ଗାଟୁଆ ବେରକୁ ଠେକା ଭାତ ପାଣି ଦ୍ଧିର ମୁଣ୍ଡେଟିଁକି ଢିଁକିଯିବୁ । ହେଇତ ଅନା—ଗିନାଏ ମଦରଙ୍ଗା ଶାଗର ସ୍ୱଇ······

ଓଥଗ୍ରୀ—ଫେଣେ ମୋ ନାଆଁ ଧଇଲ । ହଉ, ହଉ, ଘଅଟିକ ଆସିଲେ ମଜା ବୁଝିବ ନା - ହେଇ, କାନରେ ଗଣ୍ଡି ପଇଲ— ( କାନରେ ଗଣ୍ଡି ପକାଉ ପକାଉ ଚାଲିଗଲା ) ( ସେଇ ବାଟରେ କୀର୍ତ୍ତିନଆ ( ଜଣେ ଚଷା ) ଆଉ ଗାଁର ପୁରୋହିତ ବଂଶୀୟ ଜଣେ ବ୍ରାହ୍ମଣ, ଭୋବନ ସାଣି, କଥାବାର୍ତ୍ତା ହେଉ ହେଉ ପହଞ୍ଚିଲେ )

ଭୋବନ—କୀର୍ତ୍ତିନଆ,ଦେ'ଖେ ବାପ, ତୁ ଆଉ ନାହିଁ କରନା—ବାହ୍ମୁଣ କଇଲଣ କରିବ—ତୋର ଅଧିକରୁ ଅଧିକ ହବ । ବ୍ରତମାନକୁ ମୁଁ ବଡ଼ ଅକଳରେ ପଡ଼ିଛିରେ ବାପ -ଅଉଲ୍ଟୁ ଚକଡ଼ା ବିଲ ପାଞ୍ଚମାଣରେ ମୋର ଏପରିଫନ୍ଦ ଲଙ୍ଗଳମୂନ ବାଜିନାହିଁ । ବ୍ରତମାନକୁ ତ'ଅସର କପିଳସିଆ ଗାଜି ଦେଲ ଦିନୁ ସେଇଁଠାର ବିଲ ଦୋହରା ହାଲ ଟେକେଇଲେଣି । ବ୍ରତମାନକୁ ମା' ଦୁଆରକୁ ଯାଉଛି, ସେ ମୁହଁ ମୋଡ଼ୁଛି । ଶେଷକୁ ତୋ ଲାଙ୍ଗୁଡ଼ ଧରିଛି ବାପ—ବ୍ରତମାନକୁ ତୁଉ ନାହିଁ କରିଦେଲେ ମୋ ହାଲକ ଶୁଖିଯିବ ।

କୀର୍ତ୍ତିନା—ଭୋବୁନ କଟେଇ, ତୁମକୁ ବୁଝେଇକ ସବୁ କଇଲି— ତେବେ ନ ବୁଝିବ ତ ମୁଁ ଆଉ କ'ଣ କରିମି କୁହ—ଆମେ ମୂଲିଆ ମୁଣ୍ଡ—ଦେବତାଙ୍କ କାମ ହାତପଇଠ କରି ମୁଣ୍ଡ ପତେଇ ଦେଉଛୁ-ଦେବତାଙ୍କ ତୁଲେଇ ମୁଣ୍ଡ ମାଇଲ ବେରକୁ ଅଣ୍ଟାରୁ ବାଙ୍କୁଲି ଉଠିବ । ହେଇତ ଦେଖୁନ, ଉଗୁରେସର ବାବୁର ସାତମାଣ ଧରିଛି, ନଇଁର ବ'ମାଣେ ଏଗାର ଗୁଣ୍ଠ ଫେଣେ ବାବନ ପଡ଼ିଆସ୍ରୀ ବାରିତର ବିଲ ଅସ୍ୱକ, ସେଇବି ମାଣେ କ ପାଞ୍ଚ ସା' କାନ୍ତର ହବ । ସାଇଁଲ କଟେଇ, ମୁଁ ହେଲି

ଘରକୁ ଏକ୍ଲୁଟିଆ, ଯାନ ଭାଇ ଗୋବର୍ଦ୍ଧନ ମଣିଷ ହେଲା ନାଇଁ । ସବୁ ହାତେ ହାତେ ସମାଳିବାକୁ ପଡ଼ୁଛି—କଣ କରିମି ମେତେ ମାଫିକର ।

ଭେବନ— ଦେ'ଖେ କେନାପୁଅ—ବ୍ରତମାନକୁ ତୋ ତୁଣ୍ଡରୁ ନାହିଁପଦ ଶୁଣିଲେ ମୋର ଫାଙ୍କାସି ଉଡ଼ି ଯାଉଛି । କରମ ଅବଲକୁ ଠାକୁରେ ଗଧ ପାଦ ଧରିଥିଲେ । ମୁଁ ବାହ୍ମଣ, ଛତଣି ପାଟକର ରଜା—ତେତେ ବତମାନକୁ ନେହୁରା ହଉଚି ବାପ—( ହାତ ଧରି ପକାଇବା ) ଆଉ ନାଇଁ କରନା—ଟଙ୍କା ପାଉଣା ଉପରେ ଆଉ ଦ୍' ଗୌଣୀ ଦେବୁ ପଛକେ, ବ୍ରତମାନକୁ ମତେ ଟିକେ ଜବାବ ଦେଏ ।

କୀର୍ତ୍ତିମାୟୀ—ବଡ଼ ମୁଷ୍କିଲ ନୋକ ତେମେ କକେଇ—ମୂଲ ନାଗିମି, ମୋ ଗଣ୍ଡାକ ମୁଁ ନେମି, କେଇ କ'ଣ ମାହାରିଆ ଦବ ନା ମେତେ ଧାନ ଦରବ ଗନ୍ଧଉଚି । ତମ ପାଦ ଛୁଇଁ କହୁଚି-ମୁଁ ଆଉ ବାନ୍ଧ ଧଇଲେ ପାରିମି ନାଇଁ, ପାରିମି ନାଇଁ । ଯାହାକୁ ପାରିମି ନାଇଁ, ତାକୁ ଧରିମି କାହିଁ କଇଲ କକେଇ ମୋ କଥାକୁ ଖଙ୍ଗ ବୁଝିବ ନା । ତମର ସାବକ—ହରିଆ, ନରତ୍ତମା କୁଆଡ଼େ ଗଲାକ ?

ଭେଚନ—ଆରେ ବାପ, ସେଇ ଅଲପେଇସ ନରତ୍ତମା, ବ୍ରତମାନକୁ ମତେ ଏ ଦାହଗଞ୍ଜରେ ପକେଇଛି । ଏସନ କୋଉ କାନ-ତପ୍ତରେ ବାଲ୍ ଭାଗ ଧରିଛି, ଛତଣି ଦଶପଣି ଯେ ଟିକ ମୁଣ୍ଡକୁ ମତେ ନାଇଁ କରି ଦେଲା । ବ୍ରତମାନକୁ ମୁଁ ଏବେ କରେ କଣ ? ଭୁଜଙ୍ଗ ଜାଣୁ, ଆମେ ବାହ୍ମୁଣିଆ ନୋକ—ହଳ ଛୁଇଁବୁ ନାଇଁ—ସେଇଥି ପାଇଁ ଏତେ କଥା, ବ୍ରତମାନକୁ ନରତ୍ତମଟା ମେଟେ ଚାଁ ଗୁଡ଼ିଆ ଦେଇ ନ ଥାଆନ୍ତା, ତମେ ନକୁ ଏତେ ଜିଗର କାହିଁକ କରନ୍ତେ ବାପ କରିତମଆ—

କାଉଁମାଯ୍ୟା— ହଉ କକେଇ, ତୁମେ ଏତେ ଦହିଯି ହୁଅ ନାହିଁ—ମୋ ଭୁଟେଇ ଦାଢ଼ କଡ଼କ ଯାଅ, ତାକୁ ସବୁ ହାଲ ହାଇକତ କହିବ । ତା'ର ଭୂମ, ଧୁସା ଦେଖି ପୁଞ୍ଜାଏ ଭେଣ୍ଡା ଭେଣ୍ଡା ପୁଅ—ସେ ନଟେଁ ଡମ ବାଲ ଧରିବ । ମେତେ ଆଉ କଥା କହିବାକୁ ତର ନାହିଁ କକେଇ, ବହୁତ ଉଚୁର ହେଲାଣି । ତେଣେ ଉପର ଯାଇର ଅଗଣାଭାଇ ହର ଫିଙ୍ଗେଇ ଦେଇ ମେତେ ଖୋଧୁଥିବ । (କହି ତର ତର ହୋଇ ଚାଲିଗଲା)

ଭୋବନ-(ସ୍ୱଗତଃ) ଦଇବ ତୁ ଏଡ଼େ ଅନ୍ଧ—ବଡମାନଙ୍କୁ ବାହ୍ମଣ କୁଳରେ ଜନମ ଦେଇ ଏତେ ହୀନମାନ—ଅସଲ କହିଁକାଟିଠି ପାଠଙ୍କଙ୍କ ହାତରେ ଦେଇ ଏଡ଼େ ବଡ଼ କୁଳକୁ ଇମିତ କଲ-ବଲ କରୁଛୁ । ବ୍ରଡମାନଙ୍କୁ ଗୃଷବାସ ଏଡ଼େ ଶ୍ରେଷ୍ଠ କାମ ଯେ ବ୍ରାହ୍ମଣେ ହଳ ଛୁଇଁଲେ ନାଙ୍ଗଡ଼ ଖଣ୍ଡେ ଦୋଷୀ । ସଦା-କାଳେ ପର ହାତକୁ ଆଶ୍ରା କରି ଏଡ଼େ ହୀନସ୍ଥା ହବାକୁ କଣ ତୁ କପାଳରେ ଲେଖି ଦେଇଛୁ । ହଳିଆ ତାର ମନ ଖୁସିରେ ନିଜର ଡୋଳି ଓଳିଆ ଭରତ କରି ଯଉଁ ଚାଳକା ପଡ଼ି ଗଣ୍ଡିକ ଘରେ ଆଣି ଥୋଇ ଦବ, ବ୍ରଡମାନକୁ ସେଥିରୁ କୁଟ୍ଟଣୀଏ ନେବେ ଚୁରିପଣ, ମହାଜନର କରଜ ବାବତକୁ ଯିବ ଛ'ପଣ, ବଦଳ ସଉଦା ବାବଦକୁ ଯିବ ଦି'ପଣ; ଯୋଗୀ ଭିକାରୀ ନେବେ ଅଧପଣ—ବାକି ବ୍ରଡମାନକୁ ଯାହା ରହିଲା, ଠାକୁରେ ଜାଣନ୍ତି । ସେଇତକ ମାଲିକର ସେଥିରେ ପୁଣି ବ୍ରଡମାନଙ୍କ ଓଷା, ବରତ, ପୁନେଇଁ, ପରବ, ବନ୍ଧୁ ବାନ୍ଧବ, କୁଣିଆ ମଇତ୍ର—ବାର ମାସରେ ତେର ଛଟା । ହାଇରେ ଯୁଗ—ଏଇ ଗଣ୍ଡିକ ଆମଦାନୀ ପାଇଁ ବ୍ରଡମାନଙ୍କୁ ପୁଣି ହଳିଆଙ୍କୁ ସତର ଖୋସାମତ—କଣ କରିବା ? ବ୍ରଡ-ମାନଙ୍କୁ ଆଉ କେତେ ନୋକର ଗୋଡ଼ ଧରିବ । (ପ୍ରସ୍ଥାନ)

## ପଞ୍ଚ ପରିବର୍ତ୍ତନ

# ଦ୍ୱିତୀୟ ଦୃଶ୍ୟ

## ବାହିନୀପତିଙ୍କ ମଉଡ଼ ଗୃହର ବହିର୍ବାଟୀ

ଗୋଟିଏ ନାତିବୃହତ୍ ଜଣକଆ ଖଟ ଉପରେ ମସୃଣ ସପ ମସିଣାଟିଏ ପଡ଼ିଛି—ତା ଉପରେ ବଡ଼ ମାଣ୍ଡି ଟେକୁ ଠେସ ଦେଇ ଈଷତ ଚନ୍ଦଠାଣୀରେ ସତ୍ୟ ସୁନ୍ଦର ବାହିନୀପତି ସମାସୀନ—ସହଧର୍ମିଣୀ ଜ୍ୟୋତିର୍ମୟୀ ଓରଫ୍ ଟୁନା ବୋଉ ପାନ ବଟା ପାଖରେ ରଖି ଗୁଆ ଭାଙ୍ଗୁଛନ୍ତି । ସାମନାକୁ ଗୋଟିଏ ପାଖରେ ସ୍ଲେଟ ହାତ ବାଲା ବେଞ୍ଚ ଅନ୍ୟ ପାଖରେ ଚଉକିଟିଏ—ଆଗନ୍ତୁକମାନଙ୍କ ପ୍ରତୀକ୍ଷାରେ ବକ୍ଷ ମେଲାଇ ସ୍ୱାଗତ ଜଣାଉ ଅଛି ।

ଇତ୍ୟବସରରେ ବାହିନୀପତିଙ୍କର ସଂକ୍ଷିପ୍ତ ପରିଚୟ ଟିକିଏ ଏଠାରେ ଉଲ୍ଲେଖ କଲେ ବୋଧ ହୁଏ ଅତ୍ୟୁକ୍ତି ହେବ ନାହିଁ । ମତ୍-ଗଜପୁରର ପୁରାତନ ବିଶିଷ୍ଟ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ମଧ୍ୟରେ ସର୍ବୋଚ୍ଚ-ସ୍ଥାନ ଅଧିକାର କରିଥିଲେ ଏହି ବାହିନୀପତିଙ୍କ ପୂର୍ବ ପୁରୁଷ ଏହା-ଙ୍କର ପିତାମହ ବ୍ରଜସୁନ୍ଦର ନରସିଂହପୁର ଇଷ୍ଟେଟରେ ଦେବୋତ୍ତର ମେନେଜର ରୂପେ ଖୁବ୍ ଯୋଗ୍ୟତାର ସହିତ କାର୍ଯ୍ୟ କରି ରାଜାସାହେବ-ଙ୍କର ଅତି ପ୍ରିୟପାତ୍ର ହୋଇ ଖ୍ୟାତି ଅର୍ଜନ କରିଥିଲେ । ପିତା ଶିବ ସୁନ୍ଦର ବାମଣ୍ଡା ରାଜଦରବାରରେ ପଞ୍ଚଯୋଷୀ ପଦବୀ ଲାଭ କରି ରାଜ ପାର୍ଶ୍ୱଦଙ୍କ ମଧ୍ୟରେ ବିଶେଷ ସମ୍ମାନିତ ହୋଇଥିଲେ । ସତ୍ୟ ସୁନ୍ଦର ଯଥାର୍ଥ ଯୋଗ୍ୟତା ହାସଲ କରି ଥିବାରୁ ତାଙ୍କର ପିତାଙ୍କ ବିୟୋଗ ପରେ ଉକ୍ତ ଆସନକୁ ଉତ୍ତୀର୍ଣ୍ଣ ହୋଇ "ପଞ୍ଚହୋଷୀ" ପଦବୀରେ ଅଲଙ୍କୃତ ତଥା ସମ୍ମାନିତ ହୋଇଥିଲେ । ଇଂରାଜି, ବଙ୍ଗଳା ହିନ୍ଦୀ ଓ ଓଡ଼ିଆ—ଏହି ଚାରି—ଭାଷାରେ ତାଙ୍କର ଢେର ଦଖଲ ଥିଲେ

ମଧ୍ୟ ସଂସ୍କୃତରେ ଅଗାଧ ପାଣ୍ଡିତ୍ୟ ଥିଲା । ପଡ଼ୋଶୀ ଲୋକେ ତାହାଙ୍କୁ ସଂକ୍ଷିପ୍ତରେ "ଦନ୍ତା ପଣ୍ଡିତ" ବୋଲି କହନ୍ତି । ଆମ୍ଭେ ବହୁଶ୍ରମ-ସ୍ୱୀକାର ପୂର୍ବକ ନିଗୂଢ଼ ତଥ୍ୟ ଗବେଷଣା କରି ଦେଖିଛୁଁ—ପ୍ରୋକ୍ତ ନାମର ସାର୍ଥକତାମୂଳରେ ଅଛି—ପ୍ରଧାନ କାରଣ ଯୋଡ଼ିଏ । ପ୍ରଥମତଃ ଉପର ଧାଡ଼ି ଛମୁ ଦାନ୍ତ କେତୋଟି ଉର୍ଦ୍ଧ୍ୱକ ଭାବରେ ସାମନାକୁ ବାହାରି ଆସି ତାଙ୍କର ଓଷ୍ଠକୁ ଟେକି ରଖିଥାଏ; ଏଇଟି ଦାର୍ଶନିକ କାରଣ । ଦ୍ୱିତୀୟତଃ ଦନ୍ତା ଶବ୍ଦର ରୂଢ଼ି ପ୍ରୟୋଗ ଅର୍ଥାତ ଅପ୍ରିୟ-ବାଦୀ । ତତ୍‌କାଳୀନ ପଣ୍ଡିତମାନଙ୍କ ମଧ୍ୟରେ ସର୍ବଶାସ୍ତ୍ରଦର୍ଶୀ; ବିଚ-କ୍ଷଣ ଏବଂ ବିଶେଷ ବାଗ୍ମୀ ଥିବା ହେତୁ ପ୍ରତ୍ୟେକ ଶାସ୍ତ୍ରବେତ୍ତାଙ୍କ ନିକଟରେ ସେ ପୂଜ୍ୟ ତଥା ସମ୍ମାନିତ ହେଉଥିଲେ । ସୁଦୀର୍ଘକାଳ ରାଜାନୁଗୃହୀତ ଜୀବିକାରେ ନିବର୍ତ୍ତିଥିବା ବ୍ୟକ୍ତି ନିଶ୍ଚୟ ତୋଷାମୋଦ ଖୋର ହୋଇଥାଏ । ମାତ୍ର ବାହିନୀପତି ଏହି ହୀନ ସ୍ୱଭାବର ସମ୍ପୂର୍ଣ୍ଣ ବିପରୀତ ବୋଧକ ଥିଲେ । ସେ ଏପରି ନିର୍ଭୀକ, ସ୍ପଷ୍ଟବାଦୀ, ସଂସ୍କାରକ ଥିଲେ ଯେ ହୃଦୟରେ ଯେଉଁ ନିର୍ମଳ ସତ୍ୟ ସେ ଉପଲବ୍ଧି କରୁ-ଥିଲେ, ଯେତେ ଅପ୍ରିୟ ଓ ଅନର୍ଥଦ୍ୟୋତକ ହେଲେ ମଧ୍ୟ ତାହା ସାଧାରଣରେ ବ୍ୟକ୍ତ କରିବାକୁ ତିଳେମାତ୍ର ପଶ୍ଚାତ୍‌ପଦ ହେଉ ନ ଥିଲେ । ମଣ୍ଡଗଜପୁରର କୁଟଚକ୍ରୀ, ପରଶ୍ରୀକାତର, ଖଳ ବ୍ୟକ୍ତିମାନେ ଦନ୍ତା ପଣ୍ଡିତଙ୍କର ଏହି ମହତ୍ ଗୁଣକୁ ଦୁର୍ଗୁଣ ବୋଲି ପ୍ରଚାର କରୁ-ଥିଲେ ।

ବାହିନୀପତିଙ୍କ ସହଧର୍ମିଣୀ ନିହାତି ମରହଟ୍ଟୀ ଢଙ୍ଗର ନାରୀ--ଶାନ୍ତ, ଦୟା, କ୍ଷମା, ଦାକ୍ଷିଣ୍ୟ, ସ୍ନେହ, ମମତାର ସାକ୍ଷାତ୍ ମୂର୍ତ୍ତିମତୀ ଦେବୀ ସେ—ନମ୍ରତା ଓ ଲଜ୍ଜାଆନତମୁଖ ତାଙ୍କର ନାରୀ ସୁଲଭ ଶିଷ୍ଟତାର ପରିଚୟସୂଚକ ଥିଲା । ମୁଣ୍ଡରେ ସୀମନ୍ତାବୃତ ଓଢ଼ଣୀ ମଧ୍ୟରେ ରହି ଥରେ ଥରେ ସ୍ୱାମୀଙ୍କ ଆଡ଼କୁ ଚାହିଁ ଧୀରେ ଧୀରେ କହୁଥିଲେ ।

ଜ୍ୟୋତିର୍ମୟୀ—ଗାଁ ଟୁଆ ଭୁଠରେ ଆଜି କଣ୍ଢେଇକୁ ଦେଖିଲି । ଆହା, ବିଚାରି ବଡ଼ ହୀନସ୍ତା ହଉଛି । ଭଗିମାମୁଁଙ୍କ ଗୋଟିଏ ବୋଲି ଝିଅ ସେ । କେଡ଼େ ଅଲଅଲରେ ବଢ଼ିଥିଲା, ତା କପାଳରେ

ଫୁଣି ଏତେ ଦୁଃଖ ଥିଲା । ନାକପରିକି ଓଢ଼ଣୀ ପକେଇ ଯିଏ ଚନ୍ଦ୍ର ସୁରୁଜ ଦେଖୁ ନ ଥିଲା, ସେ ଫୁଣି ପଦାକୁ ବାହାରି ବାରଦୁଆରେ ( କଥାର ସ୍ୱର ଅକସ୍ମାତ୍ କମି ଯାଇ କାନ କୁହା ସ୍ୱରରେ ରହିଲା ) ଡଙ୍କି ବୁଲୁଛି । ବ୍ରାହ୍ମଣ ଘର କୁଳ ବୋହୂ, ଅଣସର ଘର ଡିଙ୍କିରେ ଚଢ଼ିବା କଥା ଶାସନଯାଏ ଜାଣିଲେ ତା ଗତଗୋତର ରହିବ ନାହିଁ । କପାଳ ଫାଟିଲା ବୋଲି ସିନା ଯୁଆକଲା । ମୁଲ ଗଣ୍ଡିଏ ଯାହା କାନରେ ଆଣୁଛି, ସେଇଥିରେ ଚୂଲି ଉପରକୁ ହାଣ୍ଡି ଯାଉଛି ।

ବାହିନୀପତି – କାହିଁକି ? ତା'ର କଅଣ ନାହିଁକି ? ପୈତୃକ ପାଞ୍ଚମାଣ ଅଉଲ ନମ୍ବର ଜମି ?

ଜ୍ୟୋତିର୍ମୟୀ—ଅଛି ଯେ ଗଲସନ ନରତମା ହଳଆ ପଣ୍ଡ ଭେବନଙ୍କର ବାଲ ଅଧକୁ ଅଧେ ପଡ଼ିଆ ପକେଇ ଦେଲା । ବାକି ଅଧକରେ କଣ ଆମଦାନ କରିଲା କେଜାଣି ପାଞ୍ଚମାସବି ଭରଣା ହେଲାନାହିଁ, ଓଳିଆ ଖାଲି ପଡ଼ିଲା । ଆଜି କାଞ୍ଚନା କାନ୍ଦିକାନ୍ଦି କହୁଥାଏ ଯେ ଗଲା ସଁ'ବାର ଦାନ ଶଣ୍ଢର ଶିଙ୍ଗଧରେ ନଳୁ ପକେଇ ଘରୁ ଚାଉଳ ଗଉଣୀଏ ଆଣି କାମ ବଟେଇଲା । ଓଳିଏ ଖାଇଲେ ତନ ଓଳି ଓପାସ ।

ବାହିନୀପତି—ଦେଖେଇଲେଣି କଣ ଟନଟୋଉ, ଆଉ ଅଳ୍ପଦିନେ ଦେଖିବ, ଅବସ୍ଥା ବୁଲି କୁତଙ୍କ ଠାଉଁ ବଳିପଡ଼ିବ । ସେଦିନ ଗୋହିରୀ ମୁଣ୍ଡରେ ଘଡ଼ିଏ କାଳ ବୁଝେଇଛି । ଭେବନ କଣ ପିଲାଟିଏ ହେଇଛି, ତା' ମୁଣ୍ଡରେ କିଛି ପଶୁ ନାହିଁ ? ଅତି ଗିଆଣିଆ ଜ ନା "ଅତି ଗିଆଣିଆ କୁଆ ଘୁଅଖାଏ"—ଜାଣିଛଟି ? ଭେବନ ଭାବୁଥିଲା ଯଜମାନ ଘରୁ ସିଧା ସାମଗ୍ରୀ ଆଣି ନଇତ ଚଳିଯିବ । ଅତି ସହଜ ଉପାୟ । ହାଡ଼ଭଙ୍ଗା ଖଟଣୀ କରିବାକୁ ପଡ଼ିବ ନାହିଁ ।

ଜ୍ୟୋତିର୍ମୟୀ · ହଁ ଗୋ, ସେଦିନ ଟିକିଏ ଏହିକଥାତ କହୁଥିଲେ

ଦ୍ଲୋବନ—କହିଲେ—"ସକାଳୁଉଠି ଯଜମାନଙ୍କ ଘରଆଡ଼େ ଯେଉଁଏ ବୁଲି ଆସିଲେତ ଖାଇବାକୁ ମୋର ପେଟ ନାହିଁ ।"

ବାହିନୀପତି—ଏବେତ ଯଜମାନଙ୍କ ଘରଆଡ଼େ ସକାଳୁ ସଞ୍ଜଯାଏ ଯେଉଁ ଖାଉଛି । ଜାଣ୍ଟି ? କେହି ତ ବାସୀ ମୁହଁରେ ବି ଟିକିଏ ସମ୍ପୃକ୍ତ କାହାନ୍ତି ।

ଜ୍ୟୋତିର୍ମୟୀ—ଛି଼ୟା—ଏ ଯଉଁ ବରିବଛିଆ କାଳ ହୋଇ ଯେ ଲୋକେ ଜନ୍ମା ଗୋଡ଼ରୁ ଗୁଡ଼ ପୋଛିକି ହାଇତ ଦଉଛନ୍ତି । ଆଉ ଦେବେ କାହାକୁ କଣ ସେ ।

ବାହିନୀପତି—ସବୁଯାକ ଏବେ ନେଏତା—ଦେଏତା କେହି ନାହିଁ । ବୁଝିଲ ଝୁନ ବୋଉ, ଯେଉଁ ହାତରେ ଚଉଦ ପାଆ । ଯାହା ହାଲ, ତାକୁ ବଳେଇଛି—ପରକୁ ତୁମପରି ଦଉଛି କିଏ ? ଏଣିକି ବୁଝି ସମଜି ଦାନ ଧର୍ମକର, ବୁଝିଲ ଝୁନ ବୋଉ !

ଜ୍ୟୋତିର୍ମୟୀ—ଆଉକଣ, ତମରତ ଖାଲି ସରିଯାଉଛି । ଯଉଁ କଥା କହ, ମଣିଷ ଜନ୍ମ ପାଇ ଟିକିଏ ଦାନ, ଧର୍ମ, ଓଷା, ବରତ କରିବ ନାହିଁତ ଆଉ କଣ ଯମ ଦୂତଙ୍କ ହାତରୁ ଡାବୁକା ଖାଇ ନରକ କୁଣ୍ଡରେ ପଡ଼ିବ ?

ବାହିନୀପତି—ରଖ ତୁମର ଯମଦୂତହେ । ସେମାନେ ସିନା ମଲାପରେ କେବେ ଘୋଷାରିବେ । ଜୀଅନ୍ତା ବେଳେ ଯେଉଁ ନଗଦ ଯମଦୂତମାନେ ନତ ଘତ ପାହିଲେ ହାବୁକା ଦଉଛନ୍ତି, ଗୋଇଠାରେ କୁଟି ପକାଉଛନ୍ତି, ଠେଙ୍ଗେଉଛନ୍ତି, ସେମାନଙ୍କଠୁଁ ବର୍ତ୍ତିଲେ ସିନା···ଛାଡ଼ ସେ କଥା—ଦ୍ଲୋବନ ଇମିତ ହନ୍ତସନ୍ତ ହଉଛି କାହିଁକି ଜାଣିଛ ? ସେ ଗୋଟିଏ ଅସଲ କର୍ମଭୀରୁ ଆଉ ଦୀର୍ଘ ସୂତ୍ରୀ । କିଛି ବୁଝି ପାରିଲ ? ଅର୍ଥାତ୍ କର୍ମ କୋଢ଼ୀ ନଷ୍ଟ୍ରମୀ, ମାଦଳ । କାମଟିଏ କରିବ ଭରିବ ବୋଲି ପକାଇ ତାଙ୍କ ସବୁ ପ୍ରକାର ସୁବିଧା ହୁଏ । ଅଳସୁଆ ପଣରେ ଖାଲି ଭୁକ ମାରେ କେହି କେବେ ବଡ଼ ଲୋକ

ହେଲଣି ନା ସେ ହେବ ? ସେତୁକ ଯାହା ସେତକଅଛି, ସେତକ ଥାଇତ କରି ଥୋଇ ସମାଳ ଚଳ ପାରିଲେ ପଛ ତା' ପଇସା ପର ଖାଆନ୍ତେ ।

ନବୋଉ—ଆଗୋ, କିଛି ହାତପାଣ୍ଠି ତ ଦରକାର । ଖଲ ବାରିରେ କିଛି ଖଟେଇଲେତ ଅଣ୍ଟିଏ ପାଇବ ।

ବାହିନୀପତ—ତମରି ସେଇ ହାତ ପାଣ୍ଠି କଥା ମୁଁ କହୁଛି—ହାତର ପାଣ୍ଠି କଣ ସରଗରୁ ଗଳ ପଡ଼ିବ । ଚେଷ୍ଟାକର, ପରିଶ୍ରମ କର କର୍ମକର—କର୍ମମୟ ସଂସାରରେ ମାନବର ଏକମାତ୍ର ଲକ୍ଷ୍ୟ ହେଉଛି କର୍ମନିଷ୍ଠତା—କର୍ମରେ ବିରକ୍ତି, ବିଭ୍ରମ, କ୍ଳାନ୍ତି, ଔଦାସିନ୍ୟ ଦେଖାଗଲେ ସୁଫଳ ପ୍ରସବ ଅସମ୍ଭବ । ବୁଦ୍ଧିମାନ କର୍ମଠ ବ୍ୟକ୍ତି ଏକ ମୁହୂର୍ତ୍ତି ସୁଦ୍ଧା ଅବସନ୍ନ ନ ହୋଇ ଅଦମ୍ୟ ଉତ୍ସାହରେ କର୍ମନିରତ ରହିଥାଏ । ଆମ ଶାସ୍ତ୍ରରେ ଅଛି: –

"ନିୟତଂ କୁରୁ କର୍ମ୍ମତ୍ୱଂ କର୍ମ୍ମଜ୍ୟାୟୋହ୍ୟ କର୍ମ୍ମଣ
ଶରୀର ଯାତାପିଚତେନ ପ୍ରସିଦ୍ଧେଦ କର୍ମ୍ମଣଃ ।"

ଅର୍ଥାର୍ଥ, ପ୍ରତ ନିୟତ ଅବିଭ୍ରମ ଗତରେ କର୍ମକର । କର୍ମ ନ କରିବା ଅପେକ୍ଷା କର୍ମ କରିବା ଶ୍ରେୟସ୍କର । କର୍ମ ନ କଲେ ଶରୀର ଯାତ୍ରା ନିର୍ବାହ ହୋଇ ପାରେନା ।

( ବାହିନୀପତ ଏକ ଝୋଙ୍କରେ ଅନର୍ଗଳ କହି ଯାଉଥିଲେ ସିନା, ମାତ୍ର ନବୋଉକୁ ଲକ୍ଷ୍ୟକରି ଜାଣି ପାରିଲେ, ସେ ଅନ୍ୟ-ମନସ୍କା ହୋଇ ପାନ ଭାଙ୍ଗିବାରେ ବ୍ୟସ୍ତ ଅଛନ୍ତି )

ବାହିନୀପତ—ବେଶ୍, ତୁମେ ତେଣେ ପାନ ଭାଙ୍ଗିବାରେ ବ୍ୟସ୍ତ—ମୁଁ ମଧ ଏଣେ ଅନର୍ଗଳ "ଅରଣ୍ୟ ରୋଦନ" କରିବାରେ ବ୍ୟସ୍ତ—

ନବୋଉ—ମଲ୍, ତମର ସବୁ ସେଇ ରୋଗ -- କଥାଟି ଠିକଏ ଉଙ୍କାରି ଦେଲେ ତମର ପାଠି ଖୁଲିଲା, ମୂଳ ଯେବେ ଥିବ ପାତାଳରେ

ଡାଳ ଯାଇ ଉଠିବଣି ଘରଗଠି । କାଲ ଆଗରେ ଇମିତ
ମୂଳା ଦ୍ୱେବଉ ଥାଅ କାହିଁକ ହେ ?

ବାହିନୀପତ—ଆରେ କଥାତ ମୂଳରୁ ଆରମ୍ଭ ହେଇ ନାହିଁ । କର୍ମ
ସମ୍ପର୍କରେ ଅବତାରଣା ମାତ୍ର ଚାଲିଛି—

ଠାକୁରବୋଉ—ତମ ଅବତାରରୁ ମତେ କ ମିଳବ ହେ । କଥା ପଡ଼ି-
ଥିଲ କଇଁମାର, ତେବେ କର୍ମ—କର୍ମ ହେଇ ଷୋଳକ
ସତ୍ତଙ୍କ ପଡ଼ୁଛ ହେ ମୁଁ ସେଥିରୁ କଣ ବୁଝିବ କହିଲ ?

ବାହିନୀପତ—ହୁଁ, ହୁଁ ହେ—ମୁଁ ଆଉ କଣ କହୁଛି କ ?—ସେଇ
ଭୋବନ ଘର କଥା—

(ଏତକବେଳେ ସେଇ ବାଟ ଦେଇ ବିରସ ମନରେ ଭୋବନା
ଯାଉଥିବା ଦେଖି ବାହିନୀପତ ଡାକଲେ—"ପାଣିଏ; ଶୁଣ,ଶୁଣ"
ଠାକୁରବୋଉ ଲାଜକରି ପାନଡ଼ାଲା ପ୍ରଭୃତ ସହ ସେହି ଘରୁ ନିଷ୍କ୍ରାନ୍ତ
ହେଲେ, ଭୋବନ ଆସି ନମସ୍କାର କରି ଚଉକଠରେ ବସିଲେ । )

ତୁମରି କଥାତ ପଡ଼ିଛି; ପାଣିଏ । ଠାକୁରବୋଉ ତୁମ ପାଇଁ ଖାଁ'ଖାଁ
ଦୁଃଖ କରୁଥିଲେ । ତାଙ୍କର ଭଉଣୀ କୁଆଡ଼େ ପିଲାଦିନେ ଖୁବ୍
ଅଲଅଲରେ ବଢ଼ିଥିଲା, ଏବେ ତାକୁ ଦେଖିଲେ ଆମ ଠାକୁର
ବୋଉଙ୍କୁ କାନ୍ଦ ଲାଗୁଛି ( କୃତ୍ରିମ ଭାବରେ ବଦ୍ରୂପ କରି ହସି
ଉଠଲେ ) ।

ଭୋବନ—(ଦୀର୍ଘ ନିଶ୍ୱାସ ପକାଇ କହିଲେ) କାନ୍ଦ ଲାଗୁଥିବ ଆଜ୍ଞା—
ବର୍ତ୍ତମାନକୁ ସିମିତ ଏକା ମୋ ଅବସ୍ଥାଟା ହେଇ ପଡ଼ିଛି—
ଭଗାରୀ ବ ମୋ ଦୁଃଖ ଦେଖିଲେ ଏଇଚ୍ଛୁଣିକା କାନ୍ଦିବ
ଆଜ୍ଞା—ବର୍ତ୍ତମାନକୁ ଠାକୁରଙ୍କୁ ତ୍ରିସନ୍ଧ୍ୟାରେ ଜଣଉଛି—
ସେଇ ଏକା ଉଧାରିଲେ ଉଧାରିବେ ।

ବାହିନୀପତ - ପାଣିଏ. ତୁମେ ଆମ ବ୍ରାହ୍ମଣ କୁଳର ମୂର୍ତ୍ତିମାନ
କଳଙ୍କ ।

ଭୋବନ—ଆଜ୍ଞା—

ବାହିନୀପତି—ଆଜ୍ଞା ?···କଣ ଆଜ୍ଞା —

ଭୋବନ—ଆଜ୍ଞା, ଚନ୍ଦ୍ରରେ ତ କଳଙ୍କ ଅଛି । ବ୍ରତମାନଙ୍କୁ ମୁଁ କଣ କରିବି ? ଏଥିରେ—(ନିଜ କପାଳରେ ବାଁ ଆଙ୍ଗୁଳି ବାଡ଼େଇ ) ଯାହା ଲେଖା ଅଛି, କିଏ ଖଣ୍ଡିବ ଆଜ୍ଞା—

ବାହିନୀପତି—ଯିଏ ତୁମକୁ ଥରକୁଥର ଦଣ୍ଡିବ ଆଉ ଚଣ୍ଡିବ—ସେହି ସବୁ ଖଣ୍ଡିବ, ଆଉ କିଏ ? ଆଚ୍ଛା, ଆଉ କେତେକାଳ ତୁମେ ଇମିତ ଲୋକମାନଙ୍କୁ ଭଣ୍ଡିବ, କହିଲ ?

ଭୋବନ—କଣ କହିଲେ ଆଜ୍ଞା ? ବ୍ରତମାନଙ୍କୁ ମୁଁ ଭଣ୍ଡୁଛି ? କାହାକୁ ଭଣ୍ଡିଲି ଆଜ୍ଞା—? ଜୋ'ଗୁରୁ, ଜୋ'ଗୁରୁ. ଜୋ'ଗୁରୁ,—ବ୍ରତମାନଙ୍କୁ ମତେ ପଚ୍ଛୁ ମରଣ ହଉ, ମୋ କୁଳରେ ଏ ଭଳି ଅପବାଦ ନ ଲଗୁ ।

ବାହିନୀପତି—ତୁମେ କୋଉ କୁଳଠା ରଖିଛ ଯେ ଏତେ କୁଳୁ କୁଳୁ ହଉଛ । ବରଂ କୁଳହାଙ୍କ ପରି ଆଜି ଚଷାର, କାଲି ବାଉରୀ, ପାଣ, କଣ୍ଡରାଙ୍କ ଗୋଡ଼ ଧରୁ ଧରୁ ତୁମ ଦିନ ସରୁନାହିଁ ।

ଭୋବନ—(ବିମର୍ଷ ଭାବେ) କଷ୍ଟ କରିବା ଆଜ୍ଞା—ବ୍ରତମାନଙ୍କୁ ଲୋକଙ୍କୁ କହିବାକୁ ତ ବାଗ ମିଳିଛି । କପାଳ ପଡ଼ିଲେ ଘର ଡିଙ୍କିଶାଳ ବି କୁମ୍ଭୀର ପାଲଟି ଯାଏ ।

ବାହିନୀପତି—ଦେଖ ପାଣିଏ, ତୁମେ ଦୁଃଖ ବୁଝ କି ସୁଖ ବୁଝ; ଏହି କପାଳ, ଭାଗ୍ୟ, ବିଧାତା, କହି କହି ବାର ଦୁଆରୁ ବାର ଚିଜ ମାଗି ଗଣ୍ଠିରେ ଗଣ୍ଠି ପକାଇବାର ଯେଉଁ ସହଜ ଉପାୟ ତୁମେ ବାଛି ନେଇଥିଲ, ସେଇଠା ତୁମର ବଞ୍ଚି ରହିବାର ଉଚିତ ପନ୍ଥା ନୁହେଁ । ତାହାହେଲେ ତୁମେ ଲୋକଙ୍କ ଭଣ୍ଡି ନାହଁକି ? ପୁଣି ନିଜକୁ ମଧ୍ୟ ଭଣ୍ଡି ଭଣ୍ଡି ଆଜି ଅକର୍ମଣ୍ୟ, ନିଷ୍କର୍ମା ହୋଇ ପରକୁ ଅନୁସରଣ କରୁଛ । ତୁମେ ବ୍ରାହ୍ମଣ-

ପିଲା । ମାନବ ସମାଜର ଶ୍ରେଷ୍ଠ, ପୂଜ୍ୟ, ପୁରୋଧାଙ୍କର ବଂଶ-ଧର ତୁମେ—ବିଦ୍ୟା, ବୁଦ୍ଧି, ଜ୍ଞାନ, ଯଶ, ଜପତପ, ମନ୍ତ୍ରଶକ୍ତି ସବୁ ପ୍ରକାର ଅଲୌକିକ ଉତ୍କର୍ଷ ସାଧନାରେ ତୁମର ପୂର୍ବ-ପୁରୁଷଙ୍କର ଆସନ ସର୍ବୋଚ୍ଚ ସୋପାନରେ ଥିଲା । ସେମାନ-ଙ୍କର ନାମ ସ୍ମରଣ କରି ଲୋକେ ମୁଣ୍ଡିଆ ମାରୁଛନ୍ତି । ଆଜି ତୁମେ କପାଳ କପାଳ ହୋଇ ମାଗି—ଖାଉଛ - କେଉଁଠି ମୁଠାଏ ମିଳିଲା ତ ଚୁଲ୍ଲୀ ଜଳିଲା, ନୋହିଲେ ନିର୍ଜଳା ଏକାଦଶୀ ତୁମେ ବ୍ରାହ୍ମଣ କୁଳର କଳଙ୍କ ନୁହଁ ? ଥରେ ନିଜ ମନକୁ ପଚାରିଲ—

ସେବକ—ବରଷେ ହେଲା, ଆଜ୍ଞା, ଢେର ଢେର ଚେଷ୍ଟା କଲିଣି । ବ୍ରତମାନକୁ ଦଧିବାମନ ଦେଉଳର ପୂଜାପଣ୍ଡା କାମପାଇଁ ଜମିଦାରଙ୍କ କଚିହ୍ରିକି ଦଉଡ଼ି ଦଉଡ଼ି ଗୋଡ଼ରୁ ପାଣିମଲା । ଦେଖିଲାବେଳକୁ ତାଙ୍କ ଘର ପୁହୋହିତର ଶଶୁର ମାଗୁଣୀ ପଣ୍ଡା, ସେଇ କାମରେ ବାହାଲ ହୋଇ ଗଲାଣି । ବ୍ରତମାନକୁ ସତୁରି ଭାଇନା' ।ଙ୍ଗେ ଗତ ଖେଦୁଅକୁ ଗଲି କଲିକତା, ଆମ ବୋହୂର ବାଦ ରସୁଣିଆ ଦୁ'ପଟ ବନ୍ଧକ ରଖି ଯେ ବ୍ରତମାନକୁ ବୁଲି ବୁଲି ବୁଲି ବୁଲି ଧଇଁସଁ, ଯେତେ ବାବୁ-ବାଡ଼ିମାନଙ୍କରେ ବୁଝିଲି, ତାଙ୍କର ଗିନ୍ନମାନେ କହିଲେ, "ଖାଏ ପରେ ପାଞ୍ଚ, ସାତ ଟଙ୍କାରୁ ବେଶି ଦେଇତେ ପାରବ । ନାଇଁ, ରଇବେ ଠାକୁର"—ଆଜ୍ଞା, ବ୍ରତମାନକୁ ଘରଆଡ଼ ଅଚଳ ହେଲାରୁ ମୁଁ ସିନା…

ବାହିନୀପତି—ପାଣିଏ, ଦେଖ, ତୁମେ ବାପା ମାଆଙ୍କର କେଡ଼େ ଯୋଗାପୁଅ—ନିଜ ଦେଶ ଛାଡ଼ି ବଙ୍ଗାଳ ମୁଲ୍କରେ ଯାଇ ପୂଝାରି, ଚାକର ହୋଇ ରହିବା ପାଇଁ ତାଙ୍କର ଗିନ୍ନୀମାନଙ୍କ ପାଖରେ ମୂଲ ହଉଛି—ହଉ, ତା'ପରେ… ଚାକରୀମଞ୍ଜୁର ହେଲା ?

ସେବକ—ନାଇଁ ଆଜ୍ଞା—ମନମାନିଲା ନାହିଁ—ବ୍ରତମାନକୁ ଆଜ ଠାଆକେ ଜଣେ ବଙ୍ଗାଳୀବାବୁ ମଙ୍ଗିଥେଲା କଇଲା—

"ମୋର ପାଉଁରୁଟି, ବିସ୍କୁଟ୍, ବାକସ ମୁଣ୍ଡେଇ ବଜାରେ ଫେରି କରି ବିକବୁ ତ ମାସକୁ ମାଇନା ପନର ଟାକାଦବା—ଯା ଉପରେ ଖୋରାକ ପୋଷାକ"—ବ୍ରଜମାନଙ୍କୁ ଚକଗ୍ର ନନା କଥାରେ ପଡ଼ି ମୁଁ ହୁଁଅ କରି ଦେଲି। ବାବୁ ମତେ ଡାକ ନେଇ କାନ ପାଖରେ କଇଲ—"ବଜାରେ ବିକା କଣା କରି ଆମ କାରଖାନାର ଉଜାଗରମିଆଁ କୁ ଚିକଏ ସାହାଯ୍ୟକରିବୁ —ଏଥିରେ ଯେବେ ରାଜିତ କହ ସାଙ୍ଗେ ସାଙ୍ଗେ ଗୁଙ୍କରୀ ଦେବ।" ମନଟା କମିତ ଗୁଁ ଘୁଁ ହେଲ- କଇଲି—"ହଉ, ମୁଁ ଚକଗ୍ରନନାକୁ ପଗ୍ଗରି କଇବି"—ବ୍ରଜମାନଙ୍କୁ ବାପ ମାଆଙ୍କ ସୁକୃତ ବଳରୁ ଆଉ ସେ ଥାନ ମାଡ଼ିନାଇଁ।

**ବାହିନୀପତ**—ଛି, ଛି, ଛି,—ଥାଉ, ଥାଉ, ପାଣିଏ, ତୁମର ସେହି ସୁଷ୍ୟାତର କାହାଣୀଗୁଡ଼ାକ ଆଉ କହ ନାହିଁ। ସାବଧାନ, ଆଉ କାହାପାଖରେ ମଧ ଏ ସବୁ ବଖାଣିବ ନାଇଁ। ବୁଝିଲ, "ସ୍ୱେରମାଆ କାନ୍ଦେନାହିଁ, ଯେବେ କନ୍ଦେ, କବାଟ କଳା କାନ୍ଦେ।" ତୁମେ ନିଜର ଘରଧନ୍ଦା ନ କରି, ପରର ସଞ୍ଚି ସଞ୍ଚି ପାଣ ପଠାଣ ପର୍ଯ୍ୟନ୍ତ ଗଣ୍ଡାଣି, ଆହୁରି କାହାଣୀ କହୁଛ। ତୁମର ବାପେ, ଗୋସାଁପେ ଯାହାକଛି ରଖି ଯାଇଛନ୍ତି, ଦିହ-ମେହେନ୍ତ କରି ସେହିତକ ନେଇ ଆଣି ଥୋଇ ଜାଣିଲେ ବରଷକ ତୁମର ବେଶ୍ ସୁରୁଖୁରୁରେ କଟି ଯାଆନ୍ତା।

**ସେବକ**—ଆଜ୍ଞା—ମୁଁ କ'ଣ ସେଥିରେ ନାମଙ୍ଗଅଚ୍ଛି—ବ୍ରଜମାନଙ୍କୁ ହେଇତପରି ଭୂଙ୍ଗେଇ ଜେନା କତରୁ ଫେରୁଛି। ଭୁଙ୍ଗେଇ କଉଚି—"ହୁଁ, ମୁଁ ଶଲ୍ଲତଙ୍କ ଧରିବ ଗୋସେଇଁ ହେଲେ, ବ୍ରଜମାନଙ୍କୁ - ମୋର ଦଶପଣି, ତମର ଛଅପଣି। ଏଥେରେ ଯେବେ ରାଜି ଅଛତ ଦ'ଗାରେ ଲେଖି ସିଠାମରେ ଦସକତ କରିଦିଅ। କାଲି ହଳ ପଟକେଇବ।" ବ୍ରଜମାନଙ୍କୁ ଯାଉଚିପରି ଦୁରୁଯା ନାହାକ କତକ୍, ତାହାଠୁଁ ଖଣ୍ଡେ ଲେଖେଇକି ଆଜି ସିମିତ ହେଲେ ସେ ଅଳଆ ଛୁଟେଇବ।

ବାହିନୀପତି—ବୁଝିଲ ପାଣିଏ, ତୁମେ ଗୋଟାଏ ଭୂତ । ତୁମ ମୁଣ୍ଡରେ ଠିକଏ ହେଲେ ଅକଲ ନାହିଁ । ଚଷାପୁଅକୁ ହାତକାଠି ଲେଖିଦେଇ ଛଅପଣି ଭାଗରେ ପାଇବ କେତେ, ହିସାବ କରି ଦେଖିଛ ? ମହାଜନ ତ ପଞ୍ଚକୁ ପଣ । ଦେଢ଼ି କରଜବାବତକୁ ତୁଲାଉ ତୁଲାଉ ତ ତୁମର ଦଫାଶେଷ । ଇଏ କଣ ଯଜମାନ ଘର ସିଧା ସାମଗ୍ରୀ ହେଇଛିକି କାନ୍ଧରେ ବୁଜୁଲିଟିଏ ପକେଇ ଘରକୁ ଫେରିବ ?

ଭୋବନ -- ଆଜ୍ଞା, ବଡମାନକୁ ମୁଠିଏଦାନାକୁ ତରସିକି ରହୁଚେଁ । ଯା'ହଉ, ଦିନ କେତେଟା ତ ଶାଗ ଭାତ ପୁଞ୍ଜିକରେ ଟାଣ ଟୁଣୁ ହେଇ ବ୍ରତମାନକୁ ଚଳିଯିବ ।

ବାହିନୀପତି—ଆହେ, ବ୍ରତମାନକୁ ଚଳିଯିବ ସିନା—ତା'ପରେ··· "ପୁନର୍ମୂଷିକୋଽଭବ"—ଯଉଁ ବୁଜୁଲିକୁ ସେହି ବୁଜଲୀ— କିଛି ନ ମିଳଲେ ଖାଡ଼ା ଖାଡ଼ା ଉପାସ—ପୁଣି ବ୍ରାହ୍ମଣୀ ଯାଇ ପରଘରେ ଧାନକୁଟିବ । ଯାହାକି ଆମ ବ୍ରାହ୍ମଣ କୁଳକୁ ଘୋର ନିନ୍ଦା ଆଉ ଲଜ୍ଜାର କଥା—ଯେତେ ଲୁଚି ଲୁଚି କଲେହେଁ ଏ କଥା କଣ ପ୍ରଘଟ ହେଉନାହିଁ ।

ଭୋବନ---ଆଜ୍ଞା—

ବାହିନୀପତି—ଏଇ ଖୋସାମତିଆ—ଦୋଅକ୍ଷରୀଟିକୁ ଖୁବ୍ ଭଲ ପଇଟେଇଛ । ଖାଲି ଆଜ୍ଞା, ଆଜ୍ଞା—ଆମେତ ଖୋଦ୍ ଶ୍ରୀଛମୁଙ୍କ ପାଖେ ପାଖେ ପନ୍ଦର କୋଡ଼ିଏ ବର୍ଷ ରହିଲୁ । ଏତେ ଆଜ୍ଞା ତ ବ୍ୟବହାର କରିନାହୁଁ ।

ଭୋବନ—( କାନମୁଣ୍ଡା ଆଉଁସି ) ଆଜ୍ଞା, ଜମିଦାର ବାବୁଙ୍କ ଘଅଠିକୁ ବରବର ଯିବା ଆସିବାରେ ବ୍ରତମାନଙ୍କୁ ସେଇଟା ମାହାବରା ହେଇ ଯାଇଛି ।

ବାହିନୀପତି—ବେଶ୍, ଭଲ କରିଛ, ବାପ ଅଜାଙ୍କ ନାଆଁ ରଖିଛ । ହଉ ଶୁଣ ପାଣିଏ, ତୁମକୁ ଗୋଟିଏ କଥା କହିବି—କିନ୍ତୁ ମୋ କଥା ମାନିବାକୁ ହେବ ।

ସେବକ— କଉନ୍ତୁ , କଉନ୍ତୁ— ଆଜ୍ଞା— ଆପଣେ ଯାହା କହିବେ , ନିଶ୍ଚେ ମୋର ଭଲ ପାଇଁ—କହିବେ । ଆପଣଙ୍କ କଥା ନ ମାନବ, ଏ ମତ୍ତଗଜପୁ... ଗାଆଁରେ ଇମିତ କୋଉ ପୁଅଅଛି ।

ବାହିନୀପତି—ପାଣିଏ, ତୁମେ ନିଜେ ହଳ କର ।

ସେବକ—( କିଛି ନ ବୁଝିଲା ପରି ସନ୍ଦେହ କରି ପଚାରିଲେ )

ବ୍ରତମାନଙ୍କୁ କଣକହିଲେ ଆଜ୍ଞା ?

ବାହିନୀପତି—ହଳ—ହଳ— ତୁମେ କରିବ ? କଣ ହଳ କରି ଆସିବ ନାହିଁ ?

ସେବକ—କବା କାମଠାଏ ଯେ ଆସିବ ନାହିଁ ଆଜ୍ଞା—କିନ୍ତୁ ବ୍ରତମାନଙ୍କୁ ମୁଁ ହଳ କରିବା, ଶାସନୀଏ ମତେ ଆଉ ପାଖ ପୂରେଇବେ ? ଶୁଣିଲାଣିଣି ବାସନ୍ଦ —ନିଆଁ ପାଣି ବନ୍ଦ —ବ୍ରତମାନଙ୍କୁ, ଆପଣେ··· ନିଜେ···ବ୍ରାହ୍ମଣ ହେଇ ଯ୍ଯା କହୁଛନ୍ତି ଆଜ୍ଞା— ( ଟିକିଏ ଶୁଖିଲା ହସ ହସିଲେ )

ବାହିନୀପତି—ହୁଁ—ହୁଁ—ହେ,ମୁଁ କହୁଛି କ'ଣ ମୁଁ କରିଛି । ତୁମେ କର, ବରଷ ଗୋଟାକରେ ତା'ର ମଜାପାଇବ । ଆଉ ଶାସନୀ ବ୍ରାହ୍ମଣ କଏ, ତୁମକୁ ଅଟକ ରଖୁଛି ରଖ୍ନ କେଉଁ ନ୍ୟାୟ ବଳରେ, କେଉଁ ଶାସ୍ତ୍ର ନିର୍ଦ୍ଦେଶରେ, କେଉଁ ଅପରାଧରେ ତୁମକୁ ଯେ ବାସନ୍ଦ କରିବେ କରନ୍ତୁ, ସେତେବେଳେ ଦେଖାଯିବ—ଜାତପୁଅ ଯେତେବେଳେ କାନ ପତେଇ ବାର ଦୁଆର ବୁଲି ମାଗି ଖାଉଛି, ସେତେବେଳେ "ଆହା" କହିବା ଦୂରେ ଥାଉ, କଏ ବୋଲି ଟିକିଏ ମୁହଁକୁ ଅନାଉ ନାହାନ୍ତି । ଆଉ କାଣିଚାଏ ଦୋଷ ଦେଖିଲେ ଗାଁକୁ ଗାଁ ଲୋକେ ଭିଡ଼ି ଆସି ମୁରବିପ୍ନାନା ଦେଖାଇବେ—କାହିଁକି ? ତୁମେ ତ ଚୋରି କରିବାକୁ ଯାଉନ, ଜନାକାରି କ ଫୌଜଦାରି କରିବାକୁ ଯାଉନ ? ଏତେଡ଼ର ପଡ଼ିଛି କାହିଁ ?

ମୁଁ କହୁଛି, ତୁମେ ହଳ କର । ସେଥିପାଇଁ ଯେ କୌଣସି ବିପଦର ସମ୍ମୁଖୀନ ହେବାକୁ ପଡ଼ିଲେ ମୁଁ ତୁମପାଇଁ ପ୍ରସ୍ତୁତ ଅଛି ।

ଭୋବନ—ଆଜ୍ଞା, ଆପଣେ ଯେତେବେଳେ କଉଛନ୍ତି, ସେ କଥା ନ ମାନିବ ମୋ ପିଣ୍ଡ କେତେ ! ହେଲେ ଆଜ୍ଞା, ବ୍ରତମାନଙ୍କୁ ଆପଣ ହେଲେ ବଡ଼ଲୋକ, ଆପଣଙ୍କ କଥା ନିଆରା । ଲୋକେ କହିବେ—"ସା ଆନ୍ତେ ସଉକୁରେ କରୁଛନ୍ତି ନା"—ଆଜ୍ଞା, ବ୍ରତମାନଙ୍କୁ ଆମେ ତ ଘୁରୁଛିଙ୍କର ଗରିବଟାଏ, ସହୁକେ ମୂଲଆମୁଣ୍ଡ—ଲଙ୍ଗଳ ଧଇଲେ ଗାସମାଏ—ମୋର ଆଉ ଗଡଗୋଡର ରଖିବେ ନାଇଁ । ନଥିଲାବେଳେ ପଡ଼ିଶା ଘରୁ ଲୁଣ ବକଟେ, ଶାଗ କେରୁଏ, ଲଙ୍କା ପୁଞ୍ଜିଏ, କଇଁଆ ବି'ଫଡ଼ା ତ ମିଳିବ ନାଇଁ, ତ'ଛଡ଼ା ମଲା ଗଲା କରି ବି'ଫାଞ୍ଜିରୁ ପୋଛିଦେବେ । ଯେଉମାନମାନଙ୍କୁ ଶିଖେଇ ବୁଝେଇ କହିବେ ଯେ ଭୋବନଟା ଅକୁଳର ହୋଇଗଲା, ତାକୁ ଆଉ କେହି ଘରେ ପୂରେଇବ ନାଇଁ । ବ୍ରତମାନଙ୍କୁ ଆଜ୍ଞା······ ( ଟିକଏ ରହିଗଲେ )

ବାହିନୀପତି—ହୁଁ—ବ୍ରତମାନଙ୍କୁ ଆଜ୍ଞା କଣ ? ତୁମେ ସବୁଦିନେ ଇମିତି କାନ ପକେଇ ବାରଦୁଆରେ ପେଟ ଦେଖେଇ ବୁଲୁଥିବ । ଶାଗ କେରାଏ, ଲଙ୍କାପୁଞ୍ଜାଏ, କଇଁଆ ବି' ଫଡ଼ା, ପାଇଁ ଦାନ୍ତ ନକୁଟୁଥିବ । କିଏ କହିବେ ମାଗିଖିଆ, କିଏ କହିବେ ନଖଟ, କିଏ କହିବେ ଢେମଣା, ସବୁ ସହୁଥିବ । ମାଣେ, ଗଉଣୀଏ ଚୂଡ଼ଲ, ଯାହା କରଜ ଆଣି ଚଳିବ, ତାହାକୁ ପୁଣି ତୁମର ମାଇପ ବାର ଦୁଆରେ ଧାନକୁଟି ଶୁଝିବ । ଏଇଟା ତୁମ ପକ୍ଷରେ ବଡ଼ ଗୌରବର କଥା—ବଡ଼ ପ୍ରଶଂସାର କଥା—ନା—?

ଭୋବନା—ଆଜ୍ଞା ତା' ନୁହେଁ ଯେ—ବ୍ରତମାନଙ୍କୁ ମୁଁ ତ କଡ଼ାକର ମୁଣ୍ଡ ନୁହେଁ—ମୋର ଚଉ ବାରି—ବଳଦ ଲୋ ବି ହଳେ ବଳଦର

ଦାମ୍ ଉଠିବ ନାହିଁ—ବ୍ରଜମାନଙ୍କୁ ଆଜ୍ଞା, ମୋର କ'ଣ ଅଛି ଯେ କୋଉ ହେମନ୍ତରେ ଫସଲ ଉଠାଇବି । ବ୍ରଜମାନଙ୍କୁ ଲଙ୍ଗଳ, ଯୁଆଳି, ହଳ-ବଳଦ, ବିହନ ପରିଯନ୍ତ ସବୁ ବାହାରୁ ଯୋଗାଡ଼ କରିବାକୁ ହେବ । ଆଜ୍ଞା, ମୁଁ କଏ, ଏ ସବୁ ମାମଲତ କାହିଁ—କଇଛି—"ଶଏମହଣ ଘିଅ ହବ—ନା—ରାଧା ନାଚିବ"—ବ୍ରଜମାନଙ୍କୁ···

ବାହିନୀପତି—ଆରେ ଦ୍ୟାଟ୍ ବ୍ରଜମାନଙ୍କୁ···ମୁଁ ତ କହୁଛି, ତୁମକୁ ସବୁ ଯୋଗାଇବି । କିଛି ନ କରୁଣୁ ଏଡ଼େ ହତାଶ ହୋଇ ପଡ଼ୁଛ କାହିଁକି ? ବିହନ ଯାହା ଦରକାର ହେବ, ଦେବି; ହଳପାଇଁ ଲଙ୍ଗଳ, ବଳଦ ଯାହା କିଛି ଦରକାର, ଦେବି । କହିବତ, ମୋର ମୂଲିଆଏ ମଧ ଯାଇ ତୁମକୁ ସାହାଯ୍ୟ କରିବେ, ତାଙ୍କ ଗଣ୍ଡାକ ତାଙ୍କୁ ଶେଷରେ ବୁଝେଇ ଦେବ । ଆଉ କଣ ଲୋଡ଼ା ମୋତେ କହୁନାହଁ ?

କେବଳ—( କୃତଜ୍ଞତାରେ ଗୋଡ଼ ଧରି ପକେଇଲେ ) ସତ କଉଚନ୍ତି ଆଜ୍ଞା ? ଆପଣଙ୍କର ଯଦି ଏତେ ଅନୁଗ୍ରହ ମୋ ଉପରେ ଅଛି —ମୁଁ ନିଶ୍ଚେ ଖାଟିବି, ନିଶ୍ଚେ ହଳ କରିବି—ଶାସନ—ଭାଇଏ ବାସନ୍ଦ କରନ୍ତୁ ପଛକେ ମୁଁ ନିଶ୍ଚେ ଆପଣଙ୍କ କଥା ରଖିବି । ଆପଣ ଥିଲେ ବ୍ରଜମାନଙ୍କୁ ମୋର ସବୁ ଅଛି । ବ୍ରଜମାନଙ୍କୁ ବାହ୍ମଣ କୁଳରେ ଜନ୍ମ ହେଇ ବହୁତ ହୀନସ୍ଥା ହେଲିଣି—ମତେ ରକ୍ଷା କରନ୍ତୁ ।

ବାହିନୀପତି—ରକ୍ଷା ମୁଁ କଣ କରିବି ହେ—ରକ୍ଷା କରିବେ ଭଗବାନ୍ —କର୍ମକର, ପରିଶ୍ରମ କର, ଫଳପାଇବା ପାଇଁ ଅପେକ୍ଷା କରନା—ସବୁ ସେହି ମଙ୍ଗଳମୟଙ୍କୁ ଅର୍ପଣ କରିଦିଅ ଦେଖିବ, ଅଳ୍ପ ଦିନରେ ନିଶ୍ଚେ ତୁମର ଭାଗ୍ୟ ଫେରିବ ।

କେବଳ—ଆପଣଙ୍କ ତୁଣ୍ଡ ସୁତୁଣ୍ଡ ହେଉ ଆଜ୍ଞା—

ବାହିନୀପତି—( ଭିତରୁ ଝିଙ୍କୋର ଖଡ଼ ଖଡ଼ ଶବ୍ଦରେ ଠୁନବୋଉ ଡାକୁଥିବାର ସୂଚନା ପାଇ କହିଲେ ) ମୋତେ କଣ କହୁଛ, ଠୁନ ବୋଉ ? ( ଠୁନବୋଉ ସଶବ୍ଦେ ଭିତର ଦୁଆର ଏରୁଣ୍ଡିବନ୍ଧ ଉପରେ ପାନ ଥାଳିଆଟି ଥୋଇ ଦେଲେ ) ଓହୋ, ହଁ, ହଁ, ନଉଛି—ପାଣିଏ, ପାନ ନିଅ ( କହି ଥାଳିଆଟିକୁ ଆଣିବାକୁ ଉଠି ଯାଉଥିଲେ )

ସେବକ – ଆଜ୍ଞା. ମୁଁ ଆଣୁଛି, ଆପଣେ ବସନ୍ତୁ । ( ପାନଥାଳିଆଟି ଆଣି ଖଟ ଉପରେ ରଖି ସେଥିରୁ ଖଣ୍ଡେ ନେଇ ଖାଇଲେ )

ବାହିନୀପତି— ସେତକ ତୁମରିପାଇଁ ପାଣିଏ, ଆଉଖଣ୍ଡେ ନଉ ନାହଁ—ନିଅ—ନିଅ—( ସେବକ ଆଉ ଖଣ୍ଡେ ପାନ ନେଲେ ) ଆଉ ଶୁଣ, କାଲି ସକାଳ ନ ହେଉଣୁ ଆସି ଆମର ଅପଠିଆକୁ ଡାକିବ—ମୁଁ ତାହାକୁ କହି ଦେଇଥିବି, ସେ ଆମର କଷରା ବଳଦ ହଳକ ଅଡ଼େଇ ଲଙ୍ଗଳ ଧରି ତୁମ ବିଲକୁ ଯିବ । ମନେ ରହିଲା—( ବାହିନୀପତି ଖଟରୁ ଓହ୍ଲେଇବା ପାଇଁ ତଳକୁ ଗୋଡ଼ ବଢ଼େଇ ଖଡ଼ମ ପିନ୍ଧିଲେ )

ସେବକ—ଆଜ୍ଞା, ଆଜ୍ଞା—ନିଶ୍ଚେ ଆସିବି ଆଜ୍ଞା—କି କଥାଏ—ବର୍ତ୍ତମାନକୁ ଆପଣେ—ଯେତେବେଳେ କଉଚନ୍ତି—ଆସିବି ନାଇଁ—ବର୍ତ୍ତମାନକୁ ନିଶ୍ଚେ ଆସିବି ଆଜ୍ଞା—

( ମୁଣ୍ଡିଆ ମାରି ସେବକ ଅତି ସନ୍ତର୍ପଣରେ ପ୍ରସ୍ଥାନ କଲେ )

ପରଦା ପତନ



# ତୃତୀୟ ଦୃଶ୍ୟ

## ଖତୁ ପ୍ରଧାନ ଘର ଢିଙ୍କିଶାଳ

କଅଁମା ଆଉ ଓଥଗି ଢିଙ୍କିରେ ଚଢ଼ି ଧାନ କୁଟୁଥିଲେ—ଢିଙ୍କି ମୁଣ୍ଡରେ ବସି ଶଙ୍କର ମା ବୁଢ଼ୀ ହାତ ମାରି ଦେଉଁ ଦେଉଁ ନଜର ପୁରୁଷା ପଣିଆ ଦେଖାଇ ସମସ୍ତଙ୍କର ଘର ସଂସାର କଥା ତନଖ ଥିଲ—

ଶଙ୍କରମା—ହେଇଲେ କଅଁମା—ଆଲୋ—"ନଈ ବାଙ୍କ ଠେଇଁ ଅଡ଼ଡ଼ି ଖସିଲା ଦୁବ ଝେରି ଗଲା ଚ୍ଛିରିକ, ଭୁଉ ଲୁଚେଇଲେ କି ହବ ଦଇବ କଇଲାଣି ଆଖି ମାରିକି ।" ଗ୍ଲେପସ୍ରୀଠା, ସକେଇ ହଉଥେଲୁ କାଇଁକମ୍—ଦାନ୍ତା ପଣ୍ଡେତ ଘର ହାଳଆ ସାଙ୍ଗରେ—ଭୋବନୀ ମରା ହାଳ କରୁଛି ଲେ ।

କଅଁମା—ଏ ଆଇଠା ଇମିତ ଜଣେ—ଗାଲୁକଥା ଗୁରୁଙ୍କ ଗଛରୁ ତୋଳି ଆଣିଲା ଦେରି—କଇବ ପରା—ଆଲେ ବୁଢ଼ୀ ଖେଣ୍ଟେଇ, କାଉ କାଆ କରି ନ ଥେଲା, ସିଏ ପରା ସ୍ନିମିତ ଅଘଷା ମୁହଁରେ ଧଉଡ଼ିଛନ୍ତି ଦୁରୁଯା ନାହାକ ଘଅଠିକି—

ଶଙ୍କରମା—କାଇଁକି ଲୋ ? ଫେଣେ ତୋ ବାହା ନଗନ ଧରିବ ବେଲି କଅଣ ଗଣା ପୋଛୁ କରିବାକୁ ଯାଇଛି କି ?

କଅଁମା—ମଲୁ ନାଇଁ ପୋଡ଼ା ମୁହିଁ. କେତେ ପାକଳଉଚି । ଆଲୋ, ତା'ଠୁଁ ପା'ଙ୍କ'ଣ କାଗଜ ନେଖେଇ ଡେଣେ ଡେଣେ ଯିବେ ଫୁଣି କରିତନଆ ଦାଦା କଟକ, କଅଣ—ଗିରିମିଟି କରିବାକୁ ।

ଶଙ୍କସ୍ୱମା—ତୋ ମୁଣ୍ଡ କରିବାକୁ—ଦୁର୍ ହୁଣ୍ଡି, ନକୁଳା ପୁତୁସ —ବିଶୁନିଆ କଅଣ ମେଟେ—ମିଛୁ ଜଇବ ? ଦେଖି କ ଛାଇଛି ପା'—

କଞ୍ଚିମା—ତାଙ୍କରି ଦେରି କଏ ଦୁଶି ଯାଇଥିବ ମଁ—କ ଅପସାନ୍ତର କଥା କଉଚୁ ଆଈ କହନ ? ଆମର ହେଲ ବାହ୍ମଣ କୁଳ—କଲେ, ହାନ୍ଦ ଛୁଇଁଲେ ଛୁଅ ଘାଆଠି—ଶାସନ ଭିତରେ ଭଗାସ୍ତି ପଣ ପଣ । ସିଏ ପୁଣି ଯ୍ୟା କରିବେ—ମତେ ସିନା ସିମିତ—ଦେଖିଲୁ ବୋଲି କଇଲୁ—ନହାତ ଅପଣାର ସ୍ୱବ ସାଇ ପଡ଼ିଶା, ମାଉଷୀ, ପିଇଷୀ, ଘର ଡିଙ୍କରେ ପେଠ ସୁଖଣ୍ଡିକ ପାଇଁ ଚଢ଼ିଲି—ତୋ' ପାଖରେ ତା' ପାଖରେ ଦାନ୍ତ—ନଲୁଠି ହେଇ ଗରଜ ମେଣ୍ଟେଉଚି ବେଲି ସିନା କଇଲୁ—ହଉ, ଦେଖେ ଆଈ, ଏ—ନଉଛଣା କଥା ମତେ କଇଲୁତ କଇଲୁ, ଆଉ ସିମିତ ତନ କାନ ନ ହୁଏ । ଭୁଉ ଏଇ ଗାଁଆଁ ପରିଗୁଣ ତ ଜାଣିଚୁ । କୁଆଠାଏ ଉଡ଼ିଗଲେ କୁଆଠାଏ ଉଡ଼ିଗଲା—ବେଲି ଗଇଜ ସାସ୍ ହାଠ ବସେଇ ଦେବେ । ମୁଁ ପୁଣି ଗରିବର ମାଇପ, ସଭିଁଙ୍କର ଠାପସ୍ । ( ଲୁହାଭିଜା ଆଖି ଦୁଇଠା ଲୁଗା କାନରେ ପୋଛି ଦେଲା )

ଶଙ୍କସ୍ୱମା—ହଇ ଲେ ନାକ କାନ୍ଦୁଡ଼ି, ଏଇ କଥାକୁ ସକଉଚୁ—ଦାଣ୍ଡରୁ ଯା' ଶୁଣିଲି, ତା'—କଇଲି—ମୋର ଏଥେରେ କ ଅପ୍ରାଧ ଲେ ମା—ହଉ, ଦେ,ଦେ, ସେ ଧାନ—ବାଇଁଶିଆକ ପଶି ଦେଲୁ—ମୁଁ ଯାଏଁ—କ ମିଳିବ ସେ ମାହାଲିଆ କଥାରୁ—( କଞ୍ଚିମା କିଛି ନ କହି ଧାନ କୁଟିବାରେ ମନ ଦେଲା । ଏତକବେଳେ ଖୁଁଭ ପଧାନ ହାତରେ ଗୋଠାଏ ପଘା ଆଉ ଖଣ୍ଡେ ଡାଙ୍ଗୁଠ ଧରି ପହଁଚିଲା•••)

ଶଙ୍କସ୍ୱମା—ହେଇତ, ପଧାନ ପୁଅ ବି ତ ଆଇଲଣି—ହଉରେ ବାପ ଖଲୁ, ଭୋବନ ବିଲ—ଆଡ଼େ ଯାଇଥେଲୁ କ ?

ଖଗୁ— ନାଇଁ ପିଇଷୀ, ତା ନାଁ କଣ କ ଆମର ଗୁରୁବାସ୍ୱର ସେ ଅଣ୍ଡିଆ ବାଛୁରୀଟାକୁ ଯାଇଥେନ ଖୋଜିବାକୁ—ତା ନାଁ କଣ କ ବାଟେରେ ଭେଟିଲା ମଙ୍ଗୁଳିଆ । କଇଲା— "ଦାଣ୍ଡ, ତା ନାଁ କଣ କ ଭେବନ ପାଣି ବଲ ଆଡେ ଇ'ଛୁଣିକା ଗଲେ, ଗୋଟେ ନୂଆ କଥା ଦେଖନ୍ତୁ ।"

ଶଙ୍କରମା— ହଁ, ହଁ ବାପ, ତୁ ଯାଇଥେଲୁ ତ ?

ଖଗୁ— ହଇ—ତା ନାଁ କଣ କି ମନଟା କମିତ ହେଲା—ମଙ୍ଗୁଳିଆ କିମ୍ବା ବାଛୁରୀଟାକୁ ଧରେଇ ଦେଁପଠିଲି—ତା ନାଁ କଣ କ ଯାଇ ଦେଖେ ତ ସତକୁ ସତ କଥାଟା ନଉତନ—ଏକା-ବେଲକେ ଅଣ୍ଡୁଆଣ କଥା—ଯାହାକ ଆମ ବାପ, ତାଙ୍କ ବାହାନ୍ତୁକେ ଦେଖି ନ ଥିଲା, ତା ନାଁ କଣ କ ଜନେ କାନେ କଉଁଠି ଶୁଣା ନ ଥିଲା—ସେଇଆ ଦେଖି ତ ମୁଁ ତାଟଙ୍କା—ତା ନାଁ କଣ କ ଭେବନ ପାଣି ନକେ ମୁଣ୍ଡରେ ଠେକା ଭିଡ଼ି ହଳ କରୁଛି—ଆଉ ପାଖିଣରେ ବଅଲ ଯୋଡ଼ାକ ହଙ୍କେଇ ହଙ୍କେଇ ତା ନାଁ କଣ କ ତା ସାଙ୍ଗରେ ବୁଲୁଛି ଅପଛିଆ—ଦନ୍ତା ପଣ୍ଡିତ ଘର ହଳିଆ ।

ଶଙ୍କରମା—ହେଇତ ଲୋ ହେଇତ—ହେଲା ? ଶଙ୍କର ମା ମରିବାକୁ ମାଟି ଖୋଜିଲାଣି ମଁ ମିଛୁ କଇବ ନାହିଁ—ମୋ କାନରେ କାଣିଗୁଏ ବାଜି ଯାଇଛି ।

ଖଗୁ—ତା ନାଁ କଣ କ ପିଇଷୀ, ତୁଣ୍ଡ ବାଇଦ ପଗ୍ ସହସ୍ର କୋଶ । କଥା ଯାଇ କାହାଁତକ ଉଠିଲାଣି । ତା ନାଁ କଣ କ ପଛିମ ଶାସନରେ ଡିବା ଡିବା ବାଜିଗଲାଣି । ତା ନାଁ କଣ କ ନକଡ଼ି ସାନ୍ତରା, ମିଛୁ ମାହାପାତ୍ରେ ତା ନାଁ କଣ କ ବାବନ ପଢ଼ିଆରୀ, ଗଣି ଦେବତା, ଦେଁଗଡ଼ି ରଥେ—ଏମାନେ ତ ଖାଲି ପାଟିକି ରଇଲେଣି । ତା' ନାଁ କଣ କି ଆଜି ଗତଙ୍କ ଭାଗବତ ଟୁଙ୍ଗୀରେ ପରା ମିଟିନ ହବଲୋ—

ଶଙ୍କସ୍ୱମା—କ'ଣ କଲୁ ବାପ ? କ'ଣ ହବ ?

ଖଣ୍ଡୁ—ମଲ୍ ଯାଃ—ଇଲେ ମିଠିନ···ମିଠିନ, ବୁଝି ପାରୁନୁ—ତା'ନାଁ କଣ କି—ସତ୍···ଭୋବନ ପାଣି କମଳ ଫାଠିଲ ଜାଣିଥା'—ତା ନାଁ କଣ କି ଜାତଆଣରେ ପୁଅ—ଯେତକ ଦିନ ଚଳଥିଲା ସେତକ । ଏଣିକ ବାଉସ୍ତି, କଣ୍ଠରୁ ତା' ଦଶା ବଳି-ପଡ଼ିବ ଲେ ପିଇଷା ।

(ଏତକବେଳେ ଢିଙ୍କି ଉପରୁ ଓହ୍ଲାଇ ଆସି କଞ୍ଚନା କଇଁ କଇ ହେଇ ବାହୁନିବା ଆରମ୍ଭ କରିଦେଲା)

କଞ୍ଚନା—ହାଁ—ବନ ପୋଡ଼ିଗଲେ ସଭିଙ୍କି ଦିଶେ—ହାଁ ବାପାସାଆନ୍ତେ—ହାଁ—ମନ ପୋଡ଼ିଗଲେ କେହି ନ ଜାଣେ—ହାଁ ବାପା-ସାଆନ୍ତେ—ହାଁ—ଥଣ୍ଟିଆ ଟାଣିଲ୍ ମତେ ନଇର ହାଁ—ବାପା ସାଆନ୍ତେ—କେଉଁ ସୁଖ ଦେଖି ଦେଇଥିଲ କି—ହାଁ । ବାପା-ସାଆନ୍ତେ—ଟୋପେ ନ ଚିପିଲୁ ଜନମ କାଳେ—ହାଁ ବୋଉଲୋ ମୋର—ମମ ହାତେ ଠେକ ଦେଲୁ କେମନ୍ତେ—ହାଁ । ବୋଉ ଲେ ମୋର—ସୁଖ କି ଦରବ ଜାଣିଲି ନାଇଁ—ହାଁ । ବୋଉ ଲେ ମୋର—କାନ୍ଦି କାନ୍ଦି ଦିନ ସରିଲା ନାଇଁ—ହାଁ । ବୋଉ ଲେ ମୋର—ଖଣ୍ଠି ଖଣ୍ଠି ଅଣ୍ଟା ଯାଏ ଘୋଳେଇ—ହାଁ । ବୋଉ ଲେ ମୋର—ହାଡ଼ରୁ ମାଉଁସ ଯାଏ ମିଳେଇ—ହାଁ । ବୋଉ ଲେ ମୋର

ଶଙ୍କସ୍ୱମା—( ପାଠିରେ ଲୁଗା ଗେଞ୍ଜି ) ତୁନି ହୁଁ—ତୁନି ହ' ଲେ ମା - ସେ ଭୋବନଟା ମୁଣ୍ଡରେ ଭୂତ ଚଢ଼ିଲା କି ? ଦିନେ ନାଇଁ କାଳେ ନାଇଁ—ଗୋଟାଏ ଅଲ୍ଲା କଥା କରି ବସିଲା । କିରେ, ଟେଣ୍ଟକମାନ ଗାଁ ଜଣକୁ ମୁଣ୍ଡେଇ ଥିଲେ, ଖାଇବାକୁ ତୋ ପେଟ ନାଇଁ । ଠୁ କୁରୁ ମୁକୁରୁ ହେଇ ଫେଣେ ଚଳି ଯାଉ ଥେଲୁନା—(କଞ୍ଚନା ପ୍ରତି) ହଉ, ହଉ, ତୁନି ହ' ମୋ ମାଆଟା ପରା—ମୋ ଧନଟା ପରା—ପିଲାଟାକୁ କ

ହୀନିମାନ କଲା । ବାହ୍ମଣ ଘର ଝିଅ—ଚନ୍ଦର ସୁରୁପ ଧାସ ବାଙ୍କୁ ନ ଥାଆନ୍ତା—ସେ ଫେଣ୍ଟେ ପରଘର ଢିଙ୍କିରେ ଚଢ଼ି ମୂଲ୍ ନାଗିଲା । ଭଇଗଙ୍କୁ କାଭଭଇ ଶାସମାଙ୍କ କାନକୁ ଯେ କଥା ମାଇ ନାଇଁ—ଯାଇଥିଲେ, କେତେ ସଭାଗଭା ହେଇ ଛୁ' ମୁଣ୍ଡା ଖଡ଼ି ଛିଡ଼ି ଯାଆନ୍ତାଣି । ଆଉରି କଣ ନା —ତାଙ୍କୁ ହାଡ଼ି ବାଉରୀ ଘର ଦେରି ଏକ ଆଡ଼ିଆ ରଖିବ—ହଉ,- ହଉ କଞ୍ଚନା. ମୋ ମୁଣ୍ଡ ଖାଉଛି—ତୁନ ହ'—

**କଞ୍ଚନା**—( କଇଁ କଇଁ ହୋଇ ) ମୁଁ କ'ଣ କରିବାଲୋ ଆଈ, ମୋ ହଲକ ଶୁଖି ଯାଉଚି ଲୋ—ମୋ ଛାତି ଫାଟିଯାଉଚି—ମୁଁ ପାଣ କଣ୍ଡଗ ଘର ଦେରି ବାଛନ୍ଦ ହେଇ କମିତ ଚଳିବି । ଦେହରୁ ମୁଣ୍ଡରୁ ତ ସବୁ କାଢ଼ି ଦେଇ ନିମ କାଠି ଗୁଞ୍ଜିଛି । କଂସା ବାସନ ଦି'ଖଣ୍ଡ ଯା' ଥିଲା ସେତକ ଗଡସନ ମାହାଜନ ଘରେ ଥୋଇ ଖଞ୍ଜଣା ବୁଟେଇଁଲେ । ଶେଷକୁ ଘର କୋଣରୁ ବାହାରି ଦୁଃଖକରି ଚଲାଉପରେ ଦି'ଠା ଫୁଟେଇଲି । ଆଉ ମତେ କିଏ ଘରେ—ପୂରେଇବ ଲୋ ଆଈ—

**ଖଡୁ**—ହଉ, ହଉ,—କଞ୍ଚନା. ତା ନାଁ କଣ କି ତୁ ଏତେ ଦହିଲି ହୋନା—ବୁଟିବା, ବୁଟିବା—ଆମେ ପାଁଜଣ ଅଣସର ବି ତ ଥିବୁ । ତା ନାଁ କଣ କି ସେ ଠାଏ କଛି କନସ କରି ଦବା ମ୍ । ସେଠ ବିକଳରେ ହୁଉ ଦେଶି ଗୋଠାଏ କାମ ବିଗୁଇ କରି ପକେଇଚି—ହଉ—ହେଲା—ତା ନାଁ କଣ କି ପାପକୁ ଓ ପ୍ରାଚିନ୍ତ ଅଛି । ସାହାସ୍ କଇଛି—ତା ନାଁ କଣ କି "ଦଣ୍ଡିବା ଶକତି ଯାଇ ଥାଇ, ସେ ପୁଣି କ୍ଷେମା ଅଚରଇ"— ପାଞ୍ଚ ପରମିଶରଙ୍କ ସାମନାରେ ନମ୍ର ହେଇ ସଡ଼ି ମାଫି ମାଗନବ । ଆରେ କିଏ ଭୁଲ ନ କରୁଚି ହୋ—ତା ନାଁ କ'ଣ କି କିଛି ଅଣ୍ଟାରୁ ଝଡ଼େଇବେ । ହଉ, ଦେଖାଯିବ— ତା ନାଁ କଣ କି ତୁ ଥଏ ଧର, ଇମିତ ହାଉଳ ଖାଇଲେ ଚଳିବ ।

କଅଁଳୀ—ମଉସା, ଏ ମନ ଯାହା ହଉଚି, ଯିଏ ଦିନଗତ କରୁଚି; ସେଇ ଜାଣେ—କେତେ—ଯାଏ ଜରିମାନା ପଡ଼ିବ କଇଲ ମଉସା ଯୋଡ଼ିପାଡ଼ି ରଖିଥିବ ।

ଖଡ୍ଡୁ—ଆଲୋ ହଁ ମୁଁ.ତା ନାଁ କଣ କ ଆଗେ ଡାକ ହେଇଯିବ ପଞ୍ଚେଶେ—

କଅଁଳୀ—ଇଲୋ ବୋଉଲୋ—ମୋ ସଂସାର ପରିଗଲା ମଉସା—
(କାନ୍ଦିଲା)

ଖଡ୍ଡୁ—ଆଲୋ ଶୁ'ଣୁଚ—ଇଟିଡ ଗ୍ଗନଆ ହଉଚୁ କାହିଁକି ? ତା ନାଁ କଣ କି ପଞ୍ଚେଶେରୁ ଏକେବାରେ ଖସିପଡ଼ିବ ପାଞ୍ଚରୁ—ଫୁଣି ତା ନାଁ କଣ କ ପାଞ୍ଚରୁ ରଇବ ଗାଁସୁଉକାରେ—ସେଇ ଗାଁ ସୁଉକା ଫୁଣି ତା ନାଁ କଣକ ପାଞ୍ଚଣା ପଇସାଠି ମୁଣ୍ଡିମରିବ । ଜାଇଁଲୁ ? ତା ନାଁ କଣ କ ରୁ ପଇସା ପାଞ୍ଚଣା ଯୋଗାଡ଼ କରିଥା',ଦେଖିବା (ନେପଥ୍ୟ ଆଡ଼କୁ ଗଡ ଫେରାଇ) ଆରେ ଚଇତନିଆ, ଚଇତନିଆରେ—ଟୋକାଟା ତ ଖାଲି ହେଣ୍ଡି ମାରି ତା ନାଁ କଣ କି ବାଏଁ ବାଏଁ ବୁଲିଲା—ମୋର ଆସୁ ଆଇଁଲା କି ନାଇଁ—ତା ନାଁ କଣ କି ହେଇଲେ—ଶୁଗୁଚି···
(ପଧାନ ଗ୍ଳିଗଲେ ଭିତରକୁ ଡମ ଡମ ହୋଇ)

ଶଙ୍କରମା—ଯା'ଲୋ ଟୋକୀ, ଆଜି ବାଟମଙ୍ଗଳାଙ୍କ କଡରେ ପଞ୍ଝଟିଏ ବସେଇ ଓଳିଙ୍କି ହୋଇ ଜଣେଇବୁ । ଭୋବନର ଏ ଘାଟି କଟିଗଲେ ନଟେଁ ଅଣାକର ଭୋଗ ନଗେଇବୁ । ମନେ ରଇଲା ଟି ?

କଅଁଳୀ—ହଁ ଲୋ ଆଇ, ଏଡ଼େ କଥାଟା (ହାତଯୋଡ଼ି ମୁଣ୍ଡରେ ଲଗାଇ ଲଗାଇ କହିଲା) ଭୁଲିଯିବି । ମା ଦୟାସାଗରୀ ଲୋ, ସତେ ଯେବେ ତୋ ମହିମା ଥବ, ମୋ—ଗୁହାରି ଶୁଣିଲେ ନଟେଁ ଭୋଗ ନଗେଇ ମାଜଣା କରିବି । ମାଆ ଲୋ···
(ସେଇବାଟେ ଭିକାରୀଟିଏ ଗାଇ ଗାଇ ଗଲା— )

—ଭିକାରୀ ଗାଉଥିଲ—

ମାଆଲୋ ତୁ ସବୁ ସାରୁ ଦୁନିଆର
ତୋ ଠେଇଁ ଦୟାର ସମାନ ବାଣ୍ଟ,
ମୋର ମୋର ହୋଇ ଲାଞ୍ଛନେଇ ମିଛ କହିଲେ
ହୁଏ କି ବେଶି ତୋ ଶ୍ରେଷ୍ଠ ? । ୦ ।

ବଡ଼ ସାନ ଭେଦ ସାତର ଅନ୍ତର,
ତୋ ପାଖେ ନାହିଁ ମା ପର ଆପଣାର;
ସଭିଏଁ ତ ତୁଆ କୋର ପଡ଼ିଛିଆ
ମଣିଷ ଗୃହେଁ କି ମଣିଷ ଅଣ୍ଟ । ୧ ।

ମାଟି ଦୁନିଆରେ ବଞ୍ଚିବା ଫିକର,
କରିବାକୁ ମନାଏ କେଉଁ ଅକଲ;
ଉଚ୍ଛୁଳେ କାହାର ଅମାର ଖମାର
ନ ପାଏ ଭିକ କେ ଦେଖାଇ ପେଟ । ୨ ।

(ଇତମଧରେ ଶଙ୍କସମା ଗଉଣୀରେ ମାପି କଅଁଣା କାନିରେ ତାର ଧାନକୁଣ୍ଡା ପାଉଣା ଗଣ୍ଡିକ ଓଜାଡ଼ି ଦେଇଥିଲା । କଅଁଣା ସେଇଥିରୁ ଭିକାରୀକୁ ମୁଠିଏ ବୃଉଳ ଦେଲ—)

ଭିକାରୀ—ମା, ବଢ଼ନ୍ତ ହେଉ, ଅହିସୁଲେଷଣୀ ହୋ—ଧନ, ଜନ, ଗୋପ, ଲକ୍ଷ୍ମୀ ପୂର୍ଣ୍ଣ ରହୁ ।

(ପୁଣି ସେଇ ଗୀତଟି ଗାଇ ଗାଇ ଗ୍ଲଲ୍ଗ)

(ଗୀତ)—ମନ ଅଛି ଯା'ର ନାହିଁ ତା'ର ଧନ,
ଧନୀ ଲେଡ଼େ ସଦା ପର ଅରଜନ;
ଥାଡବାଲା ପାଖେ ଥାଇତ ନ କହି
ଗରିବର ନିତ ଦେଖୁ ତୁ ହାଟ । ୩ ।

ମାଆଲୋ ତୁ ସବୁ ସାରୁ ଦୁନିଆର
ତୋଠେଇଁ ଦୟାର ସମାନ ବାଣ୍ଟ— (ଗ୍ଲଲଗଲ)

ଶଙ୍କରମା—( କୁଲାରେ ପାଳୁଡ଼ି ବାଉଁଶିଆରେ ଗୁଡ଼ଇ ରଖୁ ରଖ )
ମଲା ମୋର, "ନିଜ ପେଟ ଯାଏ ଛଆବାରିଙ୍କ, ବନ୍ଧୁ ବାନ୍ଧୁଥାଏ ସାତପିଢ଼ିଙ୍କ—" ଆଲୋ, ତୋ ଦୁଃଖକୁ ତ—ହାଡ଼ି, ବାଉଣ୍ଣି ନାଇଁ, ସାତଦିନ ଉପାସରେ ପଡ଼ିରଇଲେ ବାସୀ ମୁହଁରେ କେହି ଟିକିଏ ପଗ୍ଭରିବାକୁ ନାଇ —ଭାତା-ପଣିଆ କଇଲେ ସବୁ ନାଇଁ ଫୁଲେଇର—

କଅଁନା---ଦୁଃଖୀର ହେଟ ଦୁଃଖୀ ଚିହ୍ନେ ଲୋ ଆଈ---
( ମୂରୁକ ହସି କହି କହି ଗ୍ଭଲଗଲା )

ଶଙ୍କରମା—ହୁଁ—(ମୁହଁ ମୋଡ଼ି କୁଲାକୁ ଠୋକେଇ ଉପରେ ରଖି କାଖେଇ ଗ୍ଭଲଗଲା ଅନ୍ୟଦିଗକୁ )

## ପଟ ପରିବର୍ତ୍ତନ

---

# ଚତୁର୍ଥ ଦୃଶ୍ୟ

## ମଉଗଇପୁର ଭାଗବତ ଟୁଙ୍ଗୀ

ଜୀର୍ଣ୍ଣ ଘୂଳଘର ବଖରାଏ—ପିଣ୍ଡାକୁ ଲାଗି ବାଁ ପାଖକୁ ବଡ଼ ଚଉପାଢ଼ୀ—ଟୁଙ୍ଗୀ ଦୁଆରଠି ଡାହାଣ ପଟକୁ—ଟୁଙ୍ଗୀ ଭିତରକୁ ଭାଗବତ ଗାଦୀ ବଢେ—ଦୀପଟି ମିଞ୍ଜି ମିଞ୍ଜି ହେଉଛି—ଦାଣ୍ଡ ପିଣ୍ଡାରେ ବ୍ୟାସାସନ ଆଗରେ ଥୋଇ ଖଣ୍ଡିଏ ଆସନ ଉପରେ ବସି—ଭାବନ ପଣ୍ଡା ପୋଥି ବୋଲୁଛନ୍ତି—ସାମନାରେ ଦୀପରୁଖା ଉପରେ ମାଲପା ଦୀପ—ଆଖିରେ ସୂତାଡ଼ୋର ଲଗା ଅଦଢ଼ ପରଚକ୍ଷୁ—ପାଖରେ ବସିଛି ଗବୁ ପଧାନ, ତା ପାଖକୁ ମାର୍କଣ୍ଡିଆ ଭାବନ ଗୋସେଇଁ ବୋଲି ଯାଉଛନ୍ତି :—

ଯୂ୍ୟା···ଆଦ୍ୟରୁ ଅନ୍ନକୁ କରି ସାଧନା, ଘୃଉଳ ସିଦ୍ଧିରେ ଅମରସିନା ।

ଅନ୍ନହିଁ ବ୍ରହ୍ମ ବୋଲି ବେଦେ କହେ, ଅନ୍ନରୁ ଧର୍ମ ଧର୍ମୁ ଜ୍ଞାନ ହୁଏ ।

ଯୂଁ୍।···ଜ୍ଞାନରେ ମୋକ୍ଷ ହୋଇ କୁଳ ସ୍ଥଳ ,
ଏଣୁ କରି ଅନ୍ନ ସବୁରି ମୂଳ ।

ମାତା ପିତା ବନ୍ଧୁ ସୋଦର ଠାରେ, ଅନ୍ନ ବିହୁନେ ଭେଦ ବୁଦ୍ଧିକରେ ।
ଯୂଁ୍ୟା···ଅନ୍ନ ବିହୁନେ ବୁଲେ ଦ୍ୱାରେ ଦ୍ୱାରେ,
ଅନ୍ନଥିଲେଠି ସର୍ବ ଧର୍ମ କରେ ।

ଅନ୍ନବାହ୍ମଣେ ଜାତପତଯାଇ, ଜାତ ଅଜାତ ସବୁ ଘରେ ଖାଇ ।

ମାର୍କଣ୍ଡିଆ—ଏଃ—ଠିକ୍ କହିଛି ଏକା ଦେ'ଥି; ଯାହାସ୍ର କଣ ମିଛ ହବ !—କଥାଟା ସଳଖେ ସଳଖେ ଏକା ଦେହେ ଠକ୍ ଜନ ଚୁମ୍ବି ଗଲା ।

ଖଡୁ—ଓ ହୋଃ ହୋଃ—ପୁଅତ ଖାଲି ତା ନାଁ କଣକି ଖବରେ ତୁବୁତୁବୁ ହେଲାରେ—

ମାର୍କଣ୍ଡିଆ—ପଧାନେ, ଆମ ଗାଁ ଆକୁଳାଟା ମଁ, ଗୋକୁଳ ବିଶୁଆଳ ପୁଅ—ବୋପାର—ଶିଗ୍ରଧ ଯିବାରେ ହସ୍ତାଏ ହେଇ ନାଇଁ, ଯାହା ବାଙ୍କ ବୋଙ୍କର ବିଲ ପାଞ୍ଚ ପା' କାନ୍ତର ଥିଲା—କଣୁ ମହାଜନକୁ ଶାଗ ଶୁଖୁଆ ଦରରେ ବିକ ଦେଇ ଘରେ ବସି ବସି ଦିନା କେତେ ଖୁବୁ ଖାଇଲା । ମାଲ ପୁଞ୍ଜିକ ମୂଳପୋଛ ହେଲାରୁ ବାବୁ ବାହାରିଲେ—ଓଜଗାର କରି ହାବୁଡ଼ା, ହାବୁଡ଼ାରେ ହାବୁକା ଖାଇଲେ କ ଜାବୁଡ଼ା ଖାଇଲେ, ପାଖୁ ଜାଣେ. ହୋ, ହୋ, ହେଇ ହରି ବୋଲିଆ ଦଳରେ ମିଶିଲେ—ଏବେ ତ ବାବୁ ନୂଖୁଗ ନଶ ଦାଢ଼ି ବହଳରେ ମୁହଁଟାକୁ ଫାପୁଲା କରି ଗାଁକୁ ଫେରିଛନ୍ତି ଯେ ଆଉ ଇନ୍ଦ୍ର, ଚନ୍ଦ୍ର ମାନୁ ନାହାନ୍ତି—ଆଉ ଜାତ ଅଜାତ ସଭିଁଙ୍କ ଘରେ କୁଣ୍ଡୁଆଁ ହେଇ ଉଟିଆ ପକଉଛନ୍ତି ।

ଭୁବନ ପଣ୍ଡା—( ଏତେବେଳେକେ ବୁହ୍ୟଁପାରି ) ଓ...ଓ...ସ୍ତିଏ ଆକୁଳିବାବୁ କଥା କଉଛି—ଆରେ. ସେମାନେ ହେଲେ କଂଗ୍ରେସିଆ ଲୋକ—ଗାନ୍ଧୀ ଚେଲା—ସେମାନଙ୍କର—ଜାତ ଅଜାତ ବାଛଣି ନାଇଁ—ଜାଣିଲୁ ?

ମାର୍କଣ୍ଡିଆ—ହଇ, ହଇ, ସେ ସେଇଁ. ଜାଣିଲା ଯେ—ତେଣେ ପଗ୍ରା ଖୁଦ କଣି ଗଣ୍ଡେ ନାଇଁ—ପାଠିରେ ପକେଇବାକୁ—ଘର ଛିହ୍ନ ଉପରେ ଘ୍ନକୁଣ୍ଡା, କଳଶିଟି, ଯୋକଯୁଙ୍ଗା ବାଣ—ହେଇଚି—

ଖଡ୍ଡୁ— ଟୁପ୍‌କର— କେତେକେମା କାହାଣୀ ସେଡ଼ି ଫ ଟେଇଲ— ସାହାସ୍ର
ବୋଲ ହଉଚି— ଘଡ଼ିଏ ବସିବା କ ଶୁଣିବା— ତା ନାଁ କଣ
କ ଗୋଠାଏ ବାଙ୍କେ କଥା ନେଇ ବଜେଉ ବଜେତ— ହେଲ
— ଭୁବପ ବୋଲିବଟି ଯୋସେଇଁ — ତା ନାଁ କଣ କ ସେଥିରୁ
କ ପଇବା ।

ଭୁବନ ପଣ୍ଡା— ହୁଁ, ସଧାନେ, "ଦେବେର୍ଗା ମହାରାଜ, କ ମିଳାଉ
ଚନ୍ଦ୍ରିବୁ ଚାହେ— (ମୁଣି ସେ ଥି ଧରି ସଉଚୋହ୍ନି ନାକ ଅଗକୁ
ଝାଣି ଅଣି, ଦୀଘଠି ହିକିଏ— ଚେଙ୍କି ଦେଇ ଆରମ୍ଭ କଲେ—)

ଭୁବନ ପଣ୍ଡା— ହାଁ— ଅଁ— ଆଁ— ଅନ୍ନ ବିନ୍ଦୁନେ ଜାତ ପତ ଯାଇ
···ଯୁଁ । ମଳଚି; ବୋଇଲ···ଆଁ ଆଁ···କୁଳର ଅ ମର୍ଯ୍ୟାଦା
ଯା ବୁଝି ମେ ଟଇଯେ···ଅ,

ଅନ୍ନ ଥିଲେ ହି ଯାଁ ସବୁ ଆଚାର ତ·· ହାଁ···ଆଁ···ଆଁ···
ଧର୍ମ କର୍ମରେ ହେଇ ଥାଇ ପଡ···ଯୁଁ ଯା ॥

ମଙ୍ଗଳ···ଅ···କାର୍ଯ୍ୟମାନ ନାହିଁ ପଇ···ଇ···ଇ

ଅନ୍ନ ସଙ୍କ ଶୁ·· ଯାଁ ହବ ସିଧା ହୋଇ··ହାଁ ଆଁ···ଆଁ—

ଯୁଁ ଯା— ଏଣୁ କରି କୃଷି ପ୍ରାଣୀ କରିବ, କୃଷିରୁ ଧନ ଅଦ୍ଧ ମୂଳ ଲଭ ।
ଧାନରୁ ଅନ୍ନ···ଇ···ହୁଅଇ ଜାତ, ଏଣୁ ଠେ କୃଷି କରିବା
ଉଚିତ ।

କୃଷିରୁ ଧନ, ବୁଝି ହେ ବେଖାପ; କୃଷି ଠେ ପ୍ରାଣ ସବୁ ପ୍ରାଣୀଙ୍କର ।

ଖଡ୍ଡୁ ଓ ମାର୍କଣ୍ଡ— ହରିବୋଲ ··· ··· ··· ( ହରିବୋଲ )
(ଏତିକି ବେଳେ ସାଠି ଗୋଲ କରି ଟିକୁ ମାହାପାତ୍ରେ,
ନକଡ଼ି ସାନ୍ତରା, ବାବନ ପଡ଼ିହାରୀ, ଗଣି ଦେବତା ପଶି
ଆସିଲେ— ଆଗେ ଆଗେ ଟିଂଗୁଡ଼ି ଉଠେଇ ମୁଣ୍ଡ,— ହାତ
ହଲଉ ମହାନ୍ତଜାରୀ ଦେଖାଉ ଥାଆନ୍ତି— ସବା ପଛରେ
ଅଟେଧୁନଟେ— ଚଳଲନ୍ନୀକୃତ ବସ୍ତ୍ର ହୋଇ ଯୋବନ ପାଣି
ପାଣିଟେଇ—)

ଝଗଡ଼ି—ଆରେ ନାଇଁ ହୋଃ—ଆଉନ ସାଙ୍ଗରେ ସେ ସବୁ ବାହାନା ଖଟିବ ନାହିଁ—ତମକୁ ଥରେ କହିଲି—ଆଉନ ପାଖରେ ବାପ, ପୁଅର ନୁହେଁ, କି ପୁଅ, ବାପର ନୁହେଁ—ଦଶା, ଭାଗ୍ୟ, କର୍ମ, କପାଳ ଏ ଗୁଡ଼ାକ ସବୁ ମାଇପିଙ୍କ ଢଙ୍ଗ…

ବାବନ—ନସ୍ୱେଁ ନସ୍ୱେଁ…ପାଠ କଇଲା…"ଆପଣା କଲା କର୍ମମାନ, ଅଗେ ଭୁଞ୍ଜନ୍ତୁ ସବଧାନ—" ମୁଁ ନିଆଁରେ ହାତ ପୂରେଇଲେ କଣ ତମ ହାତ ପୋଡ଼ିଯିବ ? ଯା—କଉଠି ହେଲଣି ନା ହବ ହୋ। କଇଲୁ—"ଯା' ଅର୍ଜ୍ଜିବୁ, ତା ଭୁଞ୍ଜିବୁ—"

(ସମସ୍ତେ ଚଉପାଢ଼ୀ ଉପରକୁ ଯାଇ ବସିଲେ—ଭୋବନ ଚଉପାଢ଼ୀ ଉପରକୁ ଉଠି ଯାଉଥିବା ବେଳେ ଝଗଡ଼ି ବଡ଼ ପାଟିରେ କହିଲେ—)

ଝଗଡ଼ି—ହୁଁ—ହୁଁ…ହୁଁ…ଓହ୍ଲେଇ ଯାଅ—ଓହ୍ଲେଇ ଯାଅ—ସେ ପିଣ୍ଡାରେ ବସ—ସ୍ତ୍ରୀ ଧର୍ମ ଯାଇ—ସେ ଜଳକୁ ଖାଇଲୁ—ସେ ଯା ଉପରକୁ ଉଠିପାରିବ ନାଇଁ।

ଭୋବନ—(ଦୁଇ ହାତ ଯୋଡ଼ି ବିଶ୍ୱାସରେ) ଆଜ୍ଞା, ବ୍ରହ୍ମମାନଙ୍କୁ ପଞ୍ଚପରମେଶ୍ୱରଙ୍କୁ—ମୋର ଗୋଟିଏ ପ୍ରାର୍ଥନା—

ମିଶ୍ର—ଉହୁଁଃ…ଉହୁଁଃ…ଉହୁଁଃ—ଆଉ ଗୋଟିଏ ପ୍ରାର୍ଥନା କରି, ଜଣାଣ କରି, ନେହୁରା ହୋଇ—ତେବେ କଣ କାଣ୍ଡୁ ଘୁଅ ମାଡ଼ିବ—ଠଗ ଢଙ୍ଗ ଧୋଇବ ନାହିଁକି ? ନମାଁଯା, ଆବେ—ଯା' କରିବାର କରି ଦେଇଛୁ' ଆଉ କିଛି ଶୁଣା ଯିବ ନାହିଁ—

ଭୋବନ—(ପୂର୍ବବତ) ଆଜ୍ଞା, ପଞ୍ଚପରମେଶ୍ୱରଙ୍କ ବଇଠ, ବ୍ରହ୍ମମାନଙ୍କୁ ଏତିକି ଜଣାଉଛି ଯେ—ମୋର ଅପରାଧ ଇମିତ କଣ ହେଲା ଯେ ବ୍ରହ୍ମମାନଙ୍କୁ ବହୁତ ଗୁଳା ତମର ଖାଇ ଜାଣେ ମୁଁ—ଅନାସ୍ଥ ହୋଇ ଯାଇ ପଡ଼ିଥିବା ବେଇମାନକୁ କାହାରି କଣ୍ଠରେ ଟିକିଏ ହେଲେ ଦୟା ବସୁ ନାଇ ?

ନକଡ଼ି— ନାଅ ହେ ରଥେ,"ଏବେ ଗୋସେଇଁ ଅଇଲେ ମୂଳରୁ ଗାଈ—" ଅପ୍ରାଧଣ୍ଠା କଣ୍ଣ—ବୁଝେଇ ଦାଅ—ଇମିତ୍ତ ପାଣିଛଡ଼ା ଲୋକ ମୁଁ କଉଟି ଦେଖିନ ଇଁ ।

ଝଂଗଡ଼ି— କହୋ; ତମ ମୁଣ୍ଡରେ ଭୂତ ଚଢ଼ିଛିକି ? କଉଁ କୁଳରେ ଜନ୍ମ ହେଇ କେଡ଼େ କଥା ନ କଲ—ପୁଣି ଶାସନୀ ବ୍ରାହ୍ମଣ—ଗାଁଆ ଗୋଠାକର ପୁରୋହିତ ହେଇ, ତମେ ଶୂଦ୍ର—ସାଙ୍ଗରେ ହଲ ଧଇଲ—ଆହୁରି କହୁଛ କଣନା" ଅପ୍ରାଧଣ୍ଠା ମୋର ଇମିତ୍ତ କଣ୍—ହେଲା—"

ବାଉନି— ଆରେ, ସିଏ ପଗ୍ଗ ସିମିତ ଜାଣି ଗମାର ହେ—ଆପଣା "ହସ୍ତେ ଜିଭ୍ୟା ଛେଦ, କେ ତା'ର ଅଛି ପ୍ରତବାଦୀ—"ପାପର ପ୍ରାଶ୍ଚିତ ପାଇଁ ଯେଜମାନଙ୍କ ଘରେ ନମ୍ବା—ଚୌଡ଼ା ତାଲିକା ଦେଇଆସୁଛି —ଆଉ ତମ ବେଳକୁ—"ପଣ୍ଡିତ ପୁଅ ମାଙ୍କଡ଼ ମାଇଲେ ଧୋକଡ଼ଠା—"ନା—

ମିଛୁ—ଅଜିଠଉଁ ସବୁ ବନ୍ଦ—ଘର, ଦୁଆର, ନଆଁ ପାଣି, ଧୋବା ଭଣ୍ଡାରୀ, ବନ୍ଧୁ—କୁଣିଆଁ ସବୁ—ଖବର ଦାର୍, କଛି ଠିକଏ ବେଆଇନା କଲେ, ଗାଁ ମଝିରୁ—ମଧ ଉଠାଇ ଦେବାର ବେବସ୍ଥା ହବ ।

ଖୋବନି—ଅଜ୍ଞା, ହୀନସ୍ଥା ହେଇ, ବ୍ରତମାନେ କେତେ ଦୁଃଖ କଷ୍ଟ ସହି ସାତ ସାତ ଦିନ ନାଜଳା ଓପାସରେ ବ୍ରତମାନ ପାଣି ପିଇ ପିଇ ରହିଛି । ବ୍ରତମାନେ ସାହି ପଡ଼ୋଶୀ, ଜାତ ଅଣସର ସମସ୍ତଙ୍କୁ ଦୁଃଖ ଜଣେଇଛି ଅଜ୍ଞା—କେହି ନ ଶୁଣିବାରୁ ନହାତ ଅକଳରେ ପଡ଼ି ବ୍ରତମାନେ ନରୁପ୍ତ୍ର, ଗରିବ ବୋଲି ହାତେ ହାତେ ଏଇକାମଠା କରି ପକେଇଛି ।

ନକଡ଼ି—ଆଚ୍ଛା କଥା ଯେ ! କଏ ସିନା ଦିନେ ଓଳିଏ ଭାହାକୁ ଖୋଇ ଦେ—ରୁ ସବୁଦିନେ ପରକୁ ଆଶ୍ରାକଲେ କଏ

ଧବ କହିଲୁ? କାହାର କଣ ଚୋରି ମାଲ—ପଡ଼ିଛି କି ? ପୋଲି ଖିଆଙ୍କୁ ପୋଷୁଥିବ ।

ଶୋବନ—ଆଜ୍ଞା, ଧର୍ମ ଅବତାର ପଞ୍ଚ ମାନେ ବସିଛନ୍ତି । ମୋ ଅପ୍ରାଧ ପାଇଁ ବର୍ତ୍ତମାନ ଗୋଟାଏ ନିର୍ଦ୍ଦୋଷୀ ମାଇପି ଲୋକ, ବୃନ୍ଦ-ମାନଙ୍କୁ ବାଛନ୍ଧ ହୋଇ ନ ଖାଇ. —

ଖତୁ—( ଠିଆହୋଇ ହାତଯୋଡ଼ି ) ଆଜ୍ଞା, ଯୋଗେଇଁ ଭୁଲର ପଞ୍ଚପରମେଶ୍ୱର ମନେ ତା ନା କଣକ ଆସ୍ଥାନରେ ବିଚାର କରିଛନ୍ତି—ହୁକୁମ୍ ହବ ତ ତା ନାଁ କଣକ ଏଇ ଗରିବ ପଦେ କହି କଇବ—

ମିଛୁ—କହୋ, କଉନ'. ପଧାନେ, କଣ କହିବ, କୁହ, କୁହ—ଇଏତ ଧର୍ମ ସଭା—ଭଗବତ ଯେମିତି ବିଚାର କରିଛନ୍ତି—ତମେ କଣ ଆଉ ପକ୍ଷପାତର କରି କଇବ ।

ଖତୁ—ନାଇଁ ଆଜ୍ଞା—ତା ନାଁ କଣକ ଆପଣମାନଙ୍କୁ କଇବି, ମୋ ମୁଣ୍ଡ କେତେ କଡ଼ାର—ତା'ନା କଣଙ୍କ କେଇ ଗାଈ, ଚରେଇଲେ ଆପଣ ମହିଷ ଚରଉଛନ୍ତି. । ତାନାଁ କଣଙ୍କ ଶୋବନ ପାଣିଙ୍କର ଜବୁରୁ କାଇଲି ହେଇଛି । ତାନାଁ କଣଙ୍କ ଦୋଷ କୁ ବି ଦଣ୍ଡ ଠିକ ହେଇଛି—ଆଜ୍ଞା ତାନାଁ କଣଙ୍କ ସମସ୍ତେ ଭୁଲ୍ କରନ୍ତି—ଅଜାଣତରେ ବି ଗୋଡ଼ ଖସି ଯାଏ ତାନାଁ କଣଙ୍କ ଟପଠ ବାକଲରେ ବି ଲୋକେ କଣ ବୋଲି କଣ କରି ପକାନ୍ତି, ପୁରେଇତେ ବଡ଼ ସାଧାସିଧା ଲୋକ, ଦାଟନ. କାଲେ ତାନାଁ କଣଙ୍କ ତାଙ୍କ ନାଁ ରେ କହି ଶୁଣାନାଇଁ—ଦଇବ ଦୁର୍ବଳକୁ ଗୋଟାଏ କାମ ହେଇ ପଡ଼ିଛି—ଏଇ ପହିଲି ଥର ଆଜ୍ଞା, ତାନାଁ କଣଙ୍କ ତାଙ୍କୁ ମାଫି ଦିଅନ୍ତୁ—ସେ ପଞ୍ଚଙ୍କ ପାଦ ପଦୁଅଁରେ କାଇଲି ପାଉଣା ଗଣ୍ଡାକ କୁଢ଼େଇ ଦେଇ ତାନାଁ କଣଙ୍କ ମୁଣ୍ଡିଆ ମାରି କ୍ଷେମା ମାଗି ନିଅନ୍ତୁ—

( ଏତିକବେଳେ ସତ୍ୟସୁନ୍ଦର ବାହିନୀପତି ପହଞ୍ଚିଲେ—ପଇତା ବାଗରେ ଦେହରେ ପଡ଼ିଛି ଖଣ୍ଡେ ଶାନ୍ତିପୁରୀ ଚାଦର—

ଡାହାଣ ହାତରେ ବାଡ଼ି—ବାଁ ହାତରେ ପାନ ବଟା—ସାଙ୍ଗରେ ଲଲଣ୍ଠନ ଧରି ଆସିଛି ସେଇ ଅପର୍ତ୍ତିଆ—ବାହିନୀପତିଙ୍କ ହୁକୁମ—

ସମସ୍ତେ—"ଆସନ୍ତୁ, ଆସନ୍ତୁ ଆଜ୍ଞା" କହି ନମସ୍କାର କଲେ—ବାହିନୀପତି ବିନୟରେ ପ୍ରତି ନମସ୍କାର ଜଣାଇଲେ ଏବଂ ଚଉପାଢ଼ୀ ଉପରକୁ ଉଠି ବସିଲେ । ଅପର୍ତ୍ତି, ମାର୍କଣ୍ଡିଆ ପାଖରେ ବସିଲା— )

ବାହିନୀପତି—ସବୁ କାମ ଚାଲିଛି ତ ?

ଝଂଗଡ଼ି—ଅଜ୍ଞା ହୁଁ—ଏଇଛିଣିକା ତ ଗସ୍ତି ଦେବତା ଆପଣଙ୍କୁ ଡାକିବାକୁ ବାହାରି—ଥିଲେ—

ବାହିନୀପତି—ମହିଷ ଦୁଆର କୁ ଅଜିକାଲି ଦେବତାମାନେ ଡାକିବାକୁ ଗଲେଣି ପରା । ଯା'ହଉ, ଲୁଁଚ ଖାଇ ଖାଇ ଦେବତମାନେ ବି ଖବ୍ ପୋଷ୍ ମାନିଗଲେଣି—ନା— ( ହସି ଉଠିଲେ—ସମସ୍ତଙ୍କ ଭିତରେ ଉଠିଲା ଗୋଟାଏ ହସର ଲହଡ଼ି ) ହଉ, ତମ କଟେଷ୍ଟ କେତେଦୂର ଆଗେଇଲାଣି ?

ପିଣ୍ଟୁ—ଆଜ୍ଞା ସରିବା ଉପରେ ଆସି ହେଲାଣି । କଥାଟା ତ ସେମିତି କିଛି ନୁହେଁ—ମାମୁଲି କଥା—ପଦ ପଦକେ ଛଡ଼ିଗଲା ।

ବାହିନୀପତି—କାହା କଥା କହୁଛ ? ଶ୍ରୀବନ ପାଣିଙ୍କ କେସ୍ ତ ?

ନକଡ଼ି—ଆଜ୍ଞା—ହଁ—

ବାହିନୀପତି—ଶସ୍ତୁରରେ କଣ ସୁଏ ମିଳିଲା ?

ବାବନ—ଆଜ୍ଞା, ଆପଣେ ମତ୍ତଗଜପୁରର ସିଂହ ଦରିଜା—ଆଉ ସୁଏ ଦବୁ ଆମେ ହେଲେ, ଅଳିଆ ଛୁଟେଇ କଥାଟାକୁ ସାରଭଙ୍ଗ କରିଦେଇଛୁ ।

ପଣ୍ଡି—ଆଜ୍ଞା, ପରଁରୁ ହୁକୁମ ହେଲା ଯେ ଶ୍ରୀବନ ପାଣିକୁ ନିଆଁ ପାଣି, ଧୋବା ଭଣ୍ଡାରୀ, ଘରଦୁଆର, କୁଣିଆ ମଇଳ ସବୁ ବନ୍ଦ—

ବାହିନୀପତି—ତା' ମାନେ—ମୋଟ କଥାରେ ବାସନ୍ଦ—ନା—?

ନକଡ଼ି—ଆଜ୍ଞା ହଁ—ଅଗତ୍ୟା କରିବାକୁ ପଡ଼ିଲା—ନ କଲେ ଚଳୁନାଇଁ—ଦେଖୁନ୍ତୁ, ଦିନକୁ ଦିନ ଯିମିତି ଅନାସୃର... ଅତ୍ୟାସୃର...

ବାହିନୀପତି—ଓ ଉ, ବୁଝିଲି—ଆଚ୍ଛା, ପାଣିଏ ତାଙ୍କର ବଳରେ ନଜେ ହଳ କରୁଥିଲେ—ଏତିକ ତାଙ୍କର ଅପରାଧ, ନା କଣ ?

ଝଗଡ଼ି—ଆଜ୍ଞା ହଁ—ଦେଖନ୍ତୁ ତ, କେଡ଼େ କଥାଟାଏ ନ କଲେ—ଆମେ ଶାଟମା ବାହ୍ମଣ ।

ବାହିନୀପତି—ଅତଏବ, ଆମେ ସମସ୍ତଙ୍କୁ ଉଚିତ ଶାସନ କରି କରି ଆମର ବଂଶ—ବୁଡ଼େଇବୁଁ—ମେଣ୍ଢା ଧୋଉଁ ଧୋଉଁ ନବାଳ—

ମିଛୁ—ଆଜ୍ଞା, କଣ କରିବା—ନ କଲେ ଯେ ତେଜଣେ କୁଳ ଉଚ୍ଛନ୍ନ ହୋଇଯାଉଛି । ଆମ ବାହ୍ମଣ ଅମେ ନ ରଖିଲେ ଛତଣ ପଠକ ଆମକୁ ମାନିବେ କାଇଁକି ? ଶୁଦ୍ର କର୍ମ କରି ଆମେ କଣ ଇହକାଳ ପରକାଳ ସବୁ ସରିବୁ—ପିତୃ ପୁରୁଷଙ୍କୁ ଘୋର ନର୍କ ଘଷିଣ୍ଟିବୁ—ଆମର ମାନ ଗଲା...ମର୍ଯ୍ୟାଦା...

ବାହିନୀପତି—ଆହାଃ...ହଃ ହାଃ—କଣ ଗୁଡ଼ାଏ ବକ ଯାଉଛ ମହାପାତ୍ରେ—"ଆମେ' ବୋଇଲେ, ତୁମେ କାହାକୁ ବୁଝିଉଛ ? ଏଇ ଯେତେଜଣ ପଞ୍ଚ ପରମେଶ୍ୱର—ହୋଇ ବସିଛ—ଏତିକ ? ନା—ସମସ୍ତ ପଶ୍ଚିମ ଶାସନ ବାହ୍ମଣ ପଡ଼ା ଗୋଟାକୁ କାହାକୁ ?

ନକଡ଼ି—ନା—ନା—ଆଜ୍ଞା—ଆମର ହୋଲ୍ ଶାସନଟାକୁ କହୁନୁଁ ନାଁ ।

ବାହିନୀପତି—ବେଶ୍, ଆମ ଶାସନ ଭିତରେ ଯେବେ ପାଣି ତ ଆମରି ଜଣେ ଭାଇ ଆମ ଗୋଷ୍ଠୀ ଭିତରୁ ତାହାକୁ ଅଲଗା କରିଦେବା ଦ୍ୱାରା ଆମେ ଆମର ଜଣକୁ ହରେଇଲୁ—ନିହାତି ଅଭାବଗ୍ରସ୍ତ ହେବାରୁ ଯିନା ତାର ଏମିରି ଦୁରବସ୍ଥା ହେଲା—ଯେ ସେ ଆମ ବିଚାରରେ ଆଜି ଏଡ଼େ ବଡ଼ ଅପରାଧରେ ଅଭିଯୁକ୍ତ

ହେଲା । ଆମେ ତାହାର ଆହୁରି ଅଧୋଗତି ଦେଖିବା ପାଇ ଆମଠାରୁ ସମ୍ପୂର୍ଣ୍ଣ ପୃଥକ କରିଦେଲୁ । ସେ ବର୍ତ୍ତମାନ ହାଡ଼ି ବାଉରୀ ଘରେ ଖାଇପାରେ—ପାଣି ସାଙ୍ଗରେ ମିଶି ହଳ କରିପାରେ—ଇତର ଜାତି ଘରେ ଗତର ଖଟେଇ ମଜୁରୀ ଆଣିପାରେ, ନ ହେଲେ ବଞ୍ଚିବ କିପରି ? ବେଶ୍, ଆମେ ସେଥିପାଇଁ ଦାୟୀ ନୋହୁଁ । ତଥାପି ସେ ତ ପଶ୍ଚିମ ଶାସନର ବ୍ରାହ୍ମଣ ଆଉ ଆମରି ଭାଇ ବୋଲି ପରିଚୟ ଦେବ । ମୁଁ ଏତେବେଳେ ଗୋଟିଏ ପ୍ରଶ୍ନ ପଚାରୁଛି ସେ ତାର ଦୁଷ୍କର୍ମ ଦ୍ୱାରା ବର୍ତ୍ତମାନ ଆମକୁ ଯେତିକି ବାଧୁଛି, ସେତେ-ବେଳେ ଯା ଠାରୁ ବେଶି ବାଧିବ କି ନାହିଁ କହିଲ ?

ଝିଂଗଡ଼ି—ଅଜ୍ଞା, ତା ସହିତ ଆମର ଆଉ କି ସମ୍ବନ୍ଧ ? ଚଣ୍ଡାଳ ହେଲା ଯେ ସେ ଅଛୁଆଁ ଜାତି ସାଙ୍ଗେ ସମାନ । ଆମେ ତାକୁ ଆଉ ଅନେଇବୁ କାହିଁକି ଯେ ଆମକୁ ବାଧିବ ? ( ନେପଥ୍ୟ କାନ୍ଦଣାର କ୍ଷୀଣ ସ୍ୱର ଭାସି ଆସିଲା )

ବାହିନୀପତି—କେମନ୍ତ ବା ? ତୁମ ମାମୁଁ ଘର ବାଲେଇଟିକୁ ଯେବେ ଧୋବା ସାହିର କୁକୁର କାମୁଡ଼ିବାକୁ ଗୋଡ଼େଇ ଆସୁଛି, ତମକୁ ବାଧୁଛି । ସେ ତ ସହଜେ ମଣିଷ, ଆମ—ସାଙ୍ଗରେ ୨୫.୩୦ ବର୍ଷ ଚଳି ଆସିଛି, ପୁଣି ଆମରି···

ବାବନ—ଅଜ୍ଞା, ହଁ, ହଁ—ଏକାଟକ୍ରୁ—କୁଳର ପୁଅଟା, ବାଧିବ ନାହିଁ କିମିତି ?

ବାହିନୀପତି—ଅଚ୍ଛା, ବେଶ୍, ଏଇ ନିସ୍ୱ, ନିଃସହାୟ ଅବସ୍ଥାରେ ତା'ର ଅପରାଧ ପାଇଁ ଆମେ ଯେଉଁ ଦଣ୍ଡ ଦେଇଛୁ । ଆମ ବିଚାରରେ ସେଇଟା ତା' ପାଇଁ ଉପଯୁକ୍ତ ଦଣ୍ଡ । ଆମର ଏହି ଦଣ୍ଡ ବ୍ୟବସ୍ଥା ଦ୍ୱାରା ତାର ଅବସ୍ଥା ଯେତେବେଳେ ଆହୁରି ଦ୍ୱିଗୁଣ ଚଳି ପଡ଼ିବ, ସେଥିପାଇଁ ଆମକୁ କି ଦଣ୍ଡ ମିଳିବ ?

ମିଲ୍କୁ—ଆଜ୍ଞା, ତା' ହେଲେ ଶାସ୍ତ୍ର କାହିଁକି କହିଲା—"ସର୍ବନାଶ ସମୁତ୍ପନ୍ନେ ଅର୍ଦ୍ଧଂ ତ୍ୟଜନ୍ତି ପଣ୍ଡିତାଃ—"

ବାହିନୀପତି—ଏଠେଇଁ ତ କାହାରି ସର୍ବନାଶ ହୋଇ ନାହିଁ । ସର୍ବନାଶ ହେବାର ଆଶଙ୍କା ଥିଲେ ମଧ୍ୟ କଣ ଜଣକର ମୁଣ୍ଡଟା ରଖି ଗଣ୍ଡିଟା ତ୍ୟାଗ କଲେ କମ୍ବା ଗଣ୍ଡିଟା ରଖି ମୁଣ୍ଡଟାକୁ ବାଦ୍ ଦେଲେ, କୌଣସି କାର୍ଯ୍ୟରେ ଆସିବ.? ନା, ନା—ଜାଣି ଜାଣି ଆମେ ବଡ଼ ଭୁଲ୍ କରୁଛେ—ଏ ସବୁ ଅନ୍ଧ ଭୁଝାମଣା ଆମକୁ ଗ୍ରାସିବାକୁ ପଡ଼ିବ—ଆମ ସମାଜ ଆମ ଶାସନ ବୋଲି କହି ଆମେ ଗର୍ବ ବା ଗୌରବ ଅନୁଭବ କରୁଛୁ. ତାହା ଏପରି ଦୁର୍ବୋଧ୍ୟର ଦ୍ୱାରା ଦିନକୁ ଦିନ ଦୁର୍ବଳ ଆଉ ଶିଥିଳ ହୋଇ ପଡ଼ୁଛି । ଆଚ୍ଛା ମୁଁ ପଚାରୁଛି, ଆମର ସ୍ୱଜାତି ଭାଇ ସେହି ଭୋଜନୀ ପାଣି ଯେତେବେଳେ କ୍ରମେ ନିସ୍ୱ ହୋଇ ଭିକାରୀଙ୍କ ପରି ପେଟ ଦେଖାଇ ବୁଲିଲା; ସେତେବେଳେ ତା'ର ଦୁରବସ୍ଥା କମିତ ଘୁଞ୍ଚିବ, ସେଥିପାଇଁ କେହି ସ୍ୱଜାତି ହିତୈଷୀ ଏହି ପଞ୍ଚକୁ ଡକାଇ ତା ପାଇଁ ସୁପାରିଶ୍ ବା ସୁବ୍ୟବସ୍ଥା କରିଥିଲେ କି ?

ସମସ୍ତେ—( ନୀରବ )—

ବାହିନୀପତି—ନାଃ, ତା' କେହି କରି ନାହାନ୍ତି । କେବଳ ଜଣକୁ ଦୋଷୀ ବୋଲି ସାବ୍ୟସ୍ତ କରି ଗୁରୁତର ଦଣ୍ଡ ଦେବା ବେଳକୁ ଆମେ ସବୁ ଏକଜୁଟ ହୋଇ ପାରୁଛୁ । ଭାବି ଦେଖିଲ, ଏହା କଣ ଆମର ନିରପେକ୍ଷ ବିଚାର । ବ୍ରାହ୍ମଣ କାହାରି ଶାସିତ ନୁହେଁ—କିନ୍ତୁ ବ୍ରାହ୍ମଣର ଶାସନ । ତାହାର ଆଦର୍ଶରେ ଅନୁପ୍ରାଣିତ ହୋଇ ସମସ୍ତ ଗ୍ରାମ—ଏପରି କି ସମଗ୍ର ରାଜ୍ୟ ପରିଚାଳିତ ହୁଏ ବୋଲି ତାହାର ଆସନ ସବୁଠାରୁ ଉଚ୍ଚରେ ।

ନକଡ଼ି—ନଷ୍ଟେଁ—ନଷ୍ଟେଁ—ଆଜ୍ଞା, ଏଇ ଚଉଦ ବ୍ରହ୍ମାଣ୍ଡରେ ବ୍ରାହ୍ମଣର ବ୍ରହ୍ମତେଜ କଣ ନ କରିଛି । ଆପଣ ଅବୋ

ଭୁଲ କହୁ ନାହାନ୍ତି । ତେବେ···ଆଜ୍ଞା, ଏହି ଷ୍ଟେବଳ ପାଣିର କେଣ୍ କଣ ହବ ?

ବାହିନୀପତି—ଦେଖ ସାନ୍ତ୍ରୀଏ, ଷ୍ଟେବଳ ପାଣି ମଣିଷ ମାରି ନାହିଁ, କେଉଁରି ନାରୀ କରି ନାହିଁ, କାହାରି ସମ୍ପତ୍ତି ମାରି ଖାଇ ଯାଇ ନାହିଁ କମ୍ବା କାହାରି ସହିତ ଶତ୍ରୁତା କରି ନାହିଁ । ସେ ତା'ର ନିଜ ଗଲରେ ନିଜେ ହଳ କରେଛି—ମୋ ବସ୍ତ୍ରରେ···ଏଥିରେ ତା'ର କିଛି ଦୋଷ ନାହିଁ ।

ନକଡ଼ି— ଆପଣଙ୍କ ଭଲ ଲୋକ, କଣ କହୁଛନ୍ତି ଆଜ୍ଞା ?

ମିଚ୍ଚୁ—ଭାଇ କଣ ଓଲଟି ଗଲା କି ?

ଝଂଗଡ଼ି—ଆଜ୍ଞା, ଏଠେଇଁ ଷ୍ଟଗବତ ଗାଦ ଗୋପେଇ ବଡେଇ କରିଛନ୍ତି ସତ୍ୟ ।

ବାହିନୀପତି—ଓହୋଃ, ଥମ୍ଭ ଧର; ମୋର କଥା ସରିବା ଯାଏ ଟିକିଏ ଅପେକ୍ଷା କର—ହଳ—କରିବାଠକୁ ତୁମେମାନେ ନୀଚ କର୍ମ ବା ନୀଚ ଜାତିର କର୍ମ ବୋଲି କାହିଁକି ଭାବୁଛ ଯେ ମୁଁ ଦୃଢ଼ତାର ସହିତ କହିପାରେ, ଆଦିମ ଯୁଗରେ କେବଳ ଆର୍ଯ୍ୟମାନେହିଁ କୃଷିକର୍ମ କରୁଥିଲେ । ଆମର ପୂର୍ବ ପୁରୁଷଗଣ କୃଷିକର୍ମରେ ଖୁବ୍ ପ୍ରବୀଣ ଥିଲେ । ସନାତନ ମୁନି ଋଷିମାନେ କୃଷିର ପ୍ରାରମ୍ଭିକ ଆଉ କୃଷି ବିଜ୍ଞାନର ଉନ୍ନତି-କାରକ ଥିଲେ ।

ବାବନ—କଣ କହୁଛନ୍ତି ଅଜ୍ଞା ?

ବାହିନୀପତି—ମୋତେ ସବୁତ—ପ୍ରମାଣ କରି ବୁଝେଇ ଦେବା ପାଇଁ,

ଗଣି— ଅଜ୍ଞା—ଆଜ୍ଞା—ସେତିକି ତ ବୁଝି

ବାହିନୀପତି— ବେଶ୍, ଅମେମାନେ ଆର୍ଯ୍ୟ ସନ୍ତାନ ବୋଲି ଆପଣାର ପରିଚୟ ଦେଉଥିବାରୁ ତ ବୃଷ କାମଟାକୁ ଇତର ବା ନୀଚ

ଜାତକ କର୍ମ ବୋଲି ଘୃଣାରେ ଉପେକ୍ଷା—କରୁଛୁଁ । ଅଚ୍ଛା, ବର୍ତ୍ତମାନ ଦେଖାଯାଉ, ଏଇ "ଆର୍ଯ୍ୟ" ଶବ୍ଦଟି କଣ ?—ତାର ଉତ୍ପତ୍ତି କିପରି ହେଲା—ସଂସ୍କୃତ ଭାଷାରେ ଋ ଧାତୁର ଅର୍ ଶବ୍ଦର ଉତ୍ପତ୍ତି ଆଉ ଏଇ ଅର୍ ଶବ୍ଦରୁ ଅର୍ଯ୍ୟ ବା ଆର୍ଯ୍ୟ ଶବ୍ଦର ଜନ୍ମ । "ଅର୍" ଶବ୍ଦଟି ହଳ ବା କୃଷି ଶବ୍ଦ ବାଚକ । ହିନ୍ଦୁଧର୍ମାବଲମ୍ବୀ ଲୋକମାନେହିଁ ପ୍ରାଚୀନ କାଳରେ ଆର୍ଯ୍ୟ ନାମରେ ପରିଚିତ ହେଉଥିଲେ । ଋକ୍‌ବେଦ—ସଂହିତାର ଅଷ୍ଟମ ଋକ୍ ପଢ଼ିଲେ ଜଣାପଡ଼ିବ ଯେ ଏହି ଆର୍ଯ୍ୟ ଶବ୍ଦ ବୈଦିକ ଯୁଗରୁ ପ୍ରଚଳିତ ହୋଇ ଆସୁଛି । ଆର୍ଯ୍ୟମାନଙ୍କର ପ୍ରଧାନ ବସତି ଆର୍ଯ୍ୟାବର୍ତ୍ତ । ମନୁ ସଂହିତାରେ ଆର୍ଯ୍ୟାବର୍ତ୍ତର ସୀମା ନିର୍ଣ୍ଣୟ କରାଯାଇଛି ଯେ :—

"ଆସମୁଦ୍ରାତ୍ତୁ ଯେ ପୂର୍ବାଦା ସମୁଦ୍ରାତ୍ତୁ ପଶ୍ଚିମାତ୍
ତୟୋରେବାନ୍ତରଂ ଗିର୍ଯ୍ୟୋରାର୍ଯ୍ୟାବର୍ତ୍ତଂ ବିଦୁର୍ବୁଧାଃ ।"

ଉତ୍ତରରେ ହିମାଳୟ ପର୍ବତ, ଦକ୍ଷିଣରେ ବିନ୍ଧ୍ୟାଚଳ, ପୂର୍ବରେ ପୂର୍ବ ସମୁଦ୍ର, ଆଉ ପଶ୍ଚିମରେ ପଶ୍ଚିମ ସମୁଦ୍ର; ଏହାର ମଧ୍ୟବର୍ତ୍ତୀ ଭୂଭାଗ ହେଉଛି ଆର୍ଯ୍ୟାବର୍ତ୍ତ ।

ଝିଂଗଡ଼ି—ଅଜ୍ଞା, ପ୍ରତିପାଦ୍ୟ ବିଷୟ ବସ୍ତୁଠାରୁ ଦୂରକୁ ଗୁଲିପାଉଛନ୍ତି ।

ବାହିନୀପତି—ବୁଝିଲ ତଥେ, ସାଧାରଣଙ୍କୁ ବୁଝାଇବାକୁ ହେଲେ ଟିକିଏ ଅବତାରଣା ଦରକାର, ନାକହାକୁ ଟାଣିଲେ ମୁଣ୍ଡଟା ଆପଣ ଛୁଏଁ ଯେପାରି ହୋଇ ଆସିବ ନାହିଁ ?

ରାବଣ—ନିଶ୍ଚେଁ, ନିଶ୍ଚେଁ. ଆଜ୍ଞା—ଆପଣ କହନ୍ତୁ, ଆପଣ କହନ୍ତୁ ।...

ବାହିନୀପତି—ହୁଁ, ଏଇ ଆର୍ଯ୍ୟାବର୍ତ୍ତ ଓ ତାହାର ସୀମାକୁ ଚିହ୍ନାଇ ଦେବା ଉଦ୍ଦେଶ୍ୟ ହେଉଛି ଯେ ଗଙ୍ଗାନଦୀର ଅବବାହିକାରେ ଗଠିତ ହୋଇଥିବାରୁ ଏହି ସ୍ଥାନର ମାଟି ଖୁବ ଉର୍ବର । ତେଣୁ ଆର୍ଯ୍ୟମାନେ ତାହାକୁ କୃଷି ଉତ୍ପାଦନର ସର୍ବୋତ୍କୃଷ୍ଟ ସ୍ଥାନ ବୋଲି ନିର୍ବାଚନ କରି ଏପରି ଭାବରେ କୃଷିକାର୍ଯ୍ୟର ନୈପୁଣ୍ୟ ଦେଖାଇଲେ ଯେ ସମଗ୍ର ପୃଥିବୀରେ ଭାରତ ସ୍ୱର୍ଣ୍ଣ-

ପ୍ରସୁ ନାମରେ ବିଖ୍ୟାତ ଆଉ ଲୋଭନୀୟ ହେଲା । ହାଇହେ ମିଚ୍ଛୁ ପହାପାନେ, ଭାରତରେ ସୁନା ଫଳେ ବୋଲି ତ ସମସ୍ତେ କହନ୍ତି, ସେହି ସୁନା'ଟା କଣ ?

ମିଚ୍ଛୁ—ଆଜ୍ଞା, ଆମର ଏଇ ଶସ୍ୟ—ଆଉ ସତରେ କଅଣ ଗଛରେ ସୁନା ଫଳେ ନା ଫଳିବ ?

ବାହିନୀପତ—ହଁ, ତା'ହେଲେ ଏଥିରୁ ସ୍ପଷ୍ଟ ବୁଝି ଯାଉଛି ଯେ, ଆର୍ଯ୍ୟମାନେ ଉନ୍ନତଧରଣର କୃଷିଦ୍ୱାରା ଏତେ ବେଶୀ ଶସ୍ୟ ଆମଦାନୀ କଲେ ଯେ ସେହି ଶସ୍ୟ ବା ତାହାର ବିନିମୟରେ ଭାରତ ସବୁ ଦେଶଠାରୁ ସମୃଦ୍ଧିଶାଳୀ ଆଉ ଷଡୈଶ୍ୱର୍ଯ୍ୟରେ ପରିପୂର୍ଣ୍ଣା ହେଲା । ଏଗୁଡ଼ିକ ଆଲୋଚନା କରିବାର ମୂଳ ଲକ୍ଷ୍ୟ କ'ଣ ବୁଝି ପାରୁଛତ ପାଆନ୍ତୁରାଏ ?

ନକଡ଼ି—ଆଜ୍ଞା ହଁ, ଯେଉଁ ଭାରତ କୃଷି ବିଦ୍ୟା ବଳରେ ପୃଥିବୀରେ ସର୍ବଶ୍ରେଷ୍ଠ ବୋଲି ବିବେଚିତ ହେଲା, ସେହି ଦେଶର ପ୍ରାୟ ସମସ୍ତ ଆଦିମ ଅଧିବାସୀ ପ୍ରଧାନତଃ କୃଷିଜୀବୀ ହୋଇ ଥିବେ ।

ବାହିନୀପତ—ହୋଇଥିବେ କାହିଁକି ହେ ? ନିଶ୍ଚୟ କୃଷିଜୀବୀ । ଏଥିରେ ଆଉ ସନ୍ଦେହ ଅଛି ? ଆମର ପ୍ରାଚୀନ ଆର୍ଯ୍ୟଋଷି ମାନେ, ଯେଉଁମାନେ କି ଦେବତାପରି ଚିରକାଳ ପୂଜା ପାଉଛନ୍ତି । ଯାହାଙ୍କର ଗୁଣ ଆଉ ବିଦ୍ୟାର ଆଲୋକ ସାତ ସମୁଦ୍ର ତେର ନଈ ପାର ହୋଇ ଯାଇ ଇଉରୋପ ଆଉ ଆମେରିକା ପ୍ରଭୃତି ଦେଶକୁ ଆଲୋକିତ କରୁଛି; ସେହି ପରମ ପଣ୍ଡିତ ନିଜକାଳଙ୍କ ଅଦ୍ଭୁତ ଶକ୍ତିଶାଳୀ ଋଷିମାନେ ନିଜ ନିଜ ହାତରେ ହଳ କରୁଥିଲେ ।

ଗଣି—ଆଜ୍ଞା, ଏମାନେ ସବୁ କଣ ଆମପରି ବ୍ରାହ୍ମଣ ।

ବାହିନୀପତ—ଆମେ କି ବ୍ରାହ୍ମଣ ହେ । ଆମର ପିତା, ପିତାମହ, ପ୍ରପିତାମହ ବ୍ରାହ୍ମଣ, ଆମେ ତାଙ୍କଠାରୁ ଜନ୍ମ—ଅତଏବ

ଆମ୍ଭେ ବ୍ରାହ୍ମଣ । ଏହି ପାରମ୍ପରିକ ଯୁକ୍ତିଟି ମାତ୍ର ଆମର ସମ୍ବଳ—କିନ୍ତୁ ସେମାନେ ତାଙ୍କର ଅସାଧାରଣ ଯୋଗ୍ୟତା ବଳରେ ପ୍ରକୃତ ବ୍ରାହ୍ମଣତ୍ୱ ହାସଲ କରିଥିଲେ । ଶାସ୍ତ୍ର କହୁଛି :—

"ଜନ୍ମନା ଜାୟତେ ଶୂଦ୍ରଃ ସଂସ୍କାରାଦ୍ ଦ୍ୱିଜ ଉଚ୍ୟତେ,
ବେଦାଭ୍ୟାସାତ୍ ଭବେତ୍ ବିପ୍ରୋ ବ୍ରହ୍ମ ଜାନାତି ବ୍ରାହ୍ମଣଃ ।"

ଅର୍ଥାତ୍ ସମସ୍ତେ ଜନ୍ମରେ ଶୂଦ୍ର, ସଂସ୍କାର ଅନ୍ତେ ହେଲେ, ଦ୍ୱିଜ ବେଦ ପାଠ କଲେ—ବିପ୍ର, ଆଉ ବ୍ରହ୍ମଜ୍ଞାନ, ଅର୍ଥାତ ଶ୍ରେଷ୍ଠ ଜ୍ଞାନ ଲାଭ କରି ବାହ୍ମଣ ବୋଲନ୍ତି । ପୁଣି—ଏହା ଉପରକୁ ଯାହାଙ୍କଠାରୁ ବିଦ୍ୟା, ସତ୍ୟ, ତପଃ ଓ ଶ୍ରୁତ ସମ୍ୟକ୍ ରୂପେ ନିରୂପିତ ହୁଏ, ସେଇମାନେ ହେଉଁଛନ୍ତି ଋଷି । ଋଷି ପୁଣି ସାତ ପ୍ରକାର:—ଶ୍ରୁତର୍ଷି, କାଣ୍ଡର୍ଷି, ପରମର୍ଷି, ମହର୍ଷି, ରାଜର୍ଷି, ବ୍ରହ୍ମର୍ଷି ଆଉ ଦେବର୍ଷି । ପ୍ରତ୍ୟେକଙ୍କୁ ଗୋଟିଏ ଗୋଟିଏ କରି ବୁଝାଇବାକୁ ଗଲେ—

ବାବନ—ଦରକାର ନାହିଁ ଆଜ୍ଞା, ଆପଣ ବେଶିକ ଆଉ ବଢ଼ାନ୍ତୁ ନାହିଁ ।

ବାହିନୀପତି—ଆଚ୍ଛା ହେଉ, ଆମର ଋଷିମାନଙ୍କ ମଧ୍ୟରେ ବ୍ରହ୍ମର୍ଷି ବଶିଷ୍ଠ, ମହର୍ଷି ପରାଶର, ରାଜର୍ଷି ଜନକ ଅଉ ବ୍ରହ୍ମର୍ଷି ବିଶ୍ୱାମିତ୍ର ବିଖ୍ୟାତ ଆର୍ଯ୍ୟ ଚଷା ଥିଲେ—କୃଷି ବିଦ୍ୟାରେ ଏମାନେ ସମସ୍ତେ ଧୁରନ୍ଧର । ଆଚ୍ଛା, ଏ କଥାଟିତ ଜାଣିଥିବ:—
"ଅଥ ମେ କୃଷତଃ କ୍ଷେତ୍ରଂ ଲାଙ୍ଗଲା ଦୁତ୍ଥିତା ତତଃ,
କ୍ଷେତ୍ରଂ ଶୋଧୟତା ଲବ୍ଧା ନାମ୍ନା ସୀତେତି ବିଶ୍ରୁତା ॥"
ରାଜର୍ଷି ଜନକ ଯଜ୍ଞଭୂମି କର୍ଷଣ କରିବା ସମୟରେ ଶ୍ରୀରାମ-ପତ୍ନୀ ବୈଦେହୀ ସେହି ଭୂମି ମଧ୍ୟରୁ ବାହାରି ଥିଲେ । ସେଥିପାଇଁ ତାଙ୍କ ନାଁ ଦିଆଗଲା ସୀତା ।

ହୁଗଡ଼ି—ଆଜ୍ଞା, ହଁ—ସେ ତ ଜଣାଶୁଣା କଥା—

ବାହୀନୀପତି—ବେଶ, ଆହୁରି ମଧ୍ୟ ଜାଣିଥିବ, ଶ୍ରୀକୃଷ୍ଣଙ୍କ ବଡ଼ଭାଇ ବଳଦେବ (ବଳରାମ) ଯେ କି କୋଟି ସିଂହ ପରାକ୍ରମୀ, ଦ୍ୱାରକାର ରାଜା, ସେ ମଧ୍ୟ ସ୍ୱହସ୍ତରେ ହଳ କରୁଥିଲେ ।

ମିନ୍ଟୁ—ଅଜ୍ଞା, ଜାଣେ—ସେଥିପାଇଁ ତାଙ୍କର ଅଉ ଗୋଟିଏ ନାଁ ହଳଧର ।

ବାହିନୀପତି - କେବଳ ସେତିକି ନୁହେଁ, ଅର୍ଯ୍ୟମାନେ ଯେ ଆଦର୍ଶ କୃଷିବିଦ୍ୟାବିତ୍ ହେବା ଉଚିତ. ଜଗତ ସମକ୍ଷରେ ପ୍ରମାଣ କରିବା ପାଇଁ ଲଙ୍ଗଳର ମାହାତ୍ମ୍ୟ, କାର୍ଯ୍ୟକାରିତା, ଉପଯୋଗିତା ବିଶ୍ୱରେ ପ୍ରଚାର କରିବା ପାଇଁ ସେ ଗର୍ବର ସହିତ ଲଙ୍ଗଳକୁ କାନ୍ଧରେ ପକାଇ ନିଜର ଆୟୁଧ ରୂପେ ବ୍ୟବହାର କରୁଥିଲେ ।

ବାବନ—ଅଜ୍ଞା, ସେ ପରା ଲଙ୍ଗଳ ମୂନରେ ହସ୍ତିନା ତଡ଼ି ଦେଇଥିଲେ ।

ବାହିନୀପତି - ଜାଣ ତ ? ଆହୁରି ଦେଖ, ଅମରି ବ୍ରହ୍ମର୍ଷି, ମହାମୁନି ପରାଶର ଜଣେ ଭାରି ଜାଣୁଆ ଚାଷୀ ଥିଲେ । ସେ କୃଷି ବିଦ୍ୟାରେ ବିଶେଷ ପାରଗ ଅଉ ବିଚକ୍ଷଣ ଥିଲେ । ସେ କହନ୍ତି—"କୃଷିର୍ଧନ୍ୟା କୃଷିର୍ମେଧ୍ୟା ଜନ୍ତୁନାଂ ଜୀବନଂ କୃଷି"—କୃଷି ହିଁ ପ୍ରାଣୀମାନଙ୍କର ଜୀବନ—ଏହା ତାଙ୍କର ଅର୍ଷ ବଚନ ଦ୍ୱାରା ସିଦ୍ଧାନ୍ତ ହୋଇଛି ।

ଭୁବନ ପଣ୍ଡା—(ନିଜ ପୋଥି ଦେଖାଇ) ଆଜ୍ଞା, ହେଇତ ପରା—ତାଙ୍କରି ଲେଖା "କୃଷି ପରାଶର" ଖଣ୍ଡିକ ଏଇଥିଣିକା ବୋଲି ହେଉଛି ।

ବାହିନୀପତି—ହଁ, ହଁ—"କୃଷି ପରାଶର" ତାଙ୍କରି ଲେଖା—ତାହାକୁ ଓଡ଼ିଆରେ ଅନୁବାଦ କରାଯାଇଛି । ଆଚ୍ଛା, (କିଛିକ୍ଷଣ ଚିନ୍ତା କରି) ସେଇ ବହିର ପୃ ୧୧ ପୃଷ୍ଠାରେ କଣ ଲେଖା ଅଛି ପଢ଼ିଲ ।

ଭୁବନ ପଣ୍ଡା—(ପୁସ୍ତକ ଲେଉଟାଇ) ଘୁଁ…ବୋଇଲ:—

ଏବେ କହିବା କୃଷି କରଷଣ, ସୁବୁଦ୍ଧି ସାଧକଜନମାନେ ଶୁଣ ॥
କୃଷି ଶାସ୍ତ୍ର ଯେ ପରାଶର ଋଷି, ଜାଣି କହିଯାଇଛନ୍ତି ବିଶେଷି ॥
ଗୃହସ୍ଥ ଯେବେ କୃଷି ଦ୍ରବ୍ୟଦାନ, ଦେଖଇ ଦେବେ ଫଳଇ ସୁବର୍ଣ୍ଣ ॥
ଅନ୍ତଃପୁରବାସ ଗୋଚରେଦେବ, ସାତାଙ୍କୁ ପାକଶାଳାରେ ବାହିବ

ବାହିନୀପତି—ହେ, ରହ ଭୁବନ—କଅଣ ଯେଉଁଠି କହିଲ—ଅନ୍ତଃପୁର…?

ଭୁବନ—ହଁ—ଆଁ…ଆଁ…(ଅକ୍ଷି ବୁଲାଇ) ଅନ୍ତଃପୁର ବାସ ଗୋଚରେ ଦେବ…

ବାହିନୀପତି—କଥା କହିଲ ପରି ପଢ଼ି ଯାଅ ହେ—

ଭୁବନ—ହଉ "ଅନ୍ତଃପୁର ବାସ ଗୋଚରେ ଦେବ, ସତାଙ୍କୁ ପାକଶାଳରେ ବାହିବ।"

ବାହିନୀପତି—ହାଁ—ବାପା ଯେବେ ଟଟକପେଣ୍ଠାର ଦଉଛି, ମା ଯେବେ ରୋଷାଇଶାଳର ଦଉଛି—ଗଲ—ତା ପରେ…

ଭୁବନ—(ସ୍ୱରରେ) "ଗାଈ ବଳଦ ପଶୁ ଜନ୍ତୁ ମାନେ, ଏହା ସମର୍ପିବ ସାମାନ୍ୟ ଜନେ।"

ବାହିନୀପତି—ବେଶ୍, ଗାଈ ବଳଦ ପ୍ରଭୃତି ପଶୁମାନଙ୍କୁ ଘରର ବାକରଙ୍କ ଜିମା ଦେବ। ତା' ପରେ ପଢ଼—

ଭୁବନ—"କୃଷି ସାଧ୍ୟକ ଆପଣେ କରିବ। ହେଳା କଲେ ପ୍ରାନ୍ତେ ଦୁଃଖ ପାଇବ॥"

ବାହିନୀପତି—ହୁଁ, ଏଇଠି ସେ କହିଛନ୍ତି—କିନ୍ତୁ କୃଷି କାର୍ଯ୍ୟଟି ନିଜେ କରିବ। ସେଥିରେ ହେଳା କଲେ ପଛନ୍ତେ ଦୁଃଖ ପାଇବ। ଆଚ୍ଛା ପଢ଼ିଯାଅ—

ଭୁବନ -- ହୁଁ...ଆଁ...ଆଁ...ବୋଇଲା...

ଗାଈ ବଳଦ କୃଷି ଆଦିକରି । ହୁଁ...ବିଦ୍ୟା ବାଣିଜ୍ୟ ନବ ଯୁବା ସ୍ତ୍ରୀ ॥

ରାଜାଆଦି ଯେ...ଏ...ତୀକ୍ଷ୍ଣ ଶସ୍ତ୍ରମାନ । ଯେବେ ନ କରି ଯତ୍ନ ଦଣ୍ଡେ ଅବଧାନ । ହୁଁ...କ୍ରମେ କ୍ରମେ ଯେ...ଏ... ସର୍ବେ ନାଶ ଯାନ୍ତି । ଆପେ ବଥା ଲୋକେ ଦାଣ୍ଡେ ବାଛନ୍ତି ॥
ସମର୍ଥ ଲୋକ ଯେବେ କରେ କୃଷି । ଆପଣେ ହିଁ...ଇଁ...ଇଁ ସୁଖ ପରକୁ ପୋଷି ।
ସମର୍ଥ ହୋଇ ଯେ କୃଷି ଉପେକ୍ଷି । ଅସମର୍ଥ ସଙ୍ଗେ ଯତ୍ନ ତାହାକୁ ଲେଖି ।

ଭିକ୍ଷା ମାଗି ଆଣି ପୋଷଇ...ଯତ୍ନ...ପେଟ । ଆହାର ଅର୍ଥେ ନିତ୍ୟେ ଛଟପଟ ।

ବାହିନୀପତି — ବେଶ ବେଶ, ଭୁବନ — ସେତିକି ଥାଉ — ଅତି ସରଳ ଭାଷା, ବୁଝିବାକୁ କାହାରି ଅସୁବିଧା ହୋଇ ନ ଥିବ । ଆଉ ଗୋଟିଏ କଥା । ନିଜେ ଚିନ୍ତା କରି ଦେଖ, ପ୍ରାଣୀ ଜଗତରେ ସବୁଠାରୁ ବଡ଼ ସମସ୍ୟା ହେଉଛି — ଖାଦ୍ୟ ସମସ୍ୟା- ମନୁଷ୍ୟ, ପଶୁ, ପକ୍ଷୀ, କୀଟ, ପତଙ୍ଗ — ସମସ୍ତେ ରାତି ପାହିଲେ ଖାଇବା ପାଇଁ ବ୍ୟାକୁଳ — ସବୁବେଳେ ଖାଦ୍ୟ ଅନ୍ୱେଷଣରେ ବ୍ୟାପୃତ — କେବଳ — "ଖାଇବା, ଜୀଇଁବା" ଏହି ଚିନ୍ତା ସମସ୍ତଙ୍କର ନା — କଣ କହୁନ' ରଥେ ?

ଝିଙ୍ଗଡ଼ି — ଆଜ୍ଞା, ସେଥିରେ ଆଉ ଭୁଲ୍ ଅଛି । ଭାଗବତରେ ଦାସେ କହିଲେ —

"ଏ ଜୀବ ଆହାର ଲମ୍ପଟେ । ବନ୍ଧନ ଭବ ସିନ୍ଧୁ ତଟେ ॥
ଯାବତ ନ ପୂରେ ଉଦର । ତାବତ ଜ୍ଞାନ କାହିଁ ମୋର ॥"

ବାହିନୀପତି — ଶୁଣ ରଥେ, ଆଜିକାଲିକା ପରି ଆଦିମ କାଳରେ ତ ଏମିତି ବାଣିଜ୍ୟ ବ୍ୟବସାୟ, ଅଫିସ କଚେରୀ, କଳ

କାରଖାନା, ମିଲ୍ କ ଗୋଦାମ ନ ଥିଲା । ଲୋକେ ମଧ୍ୟ ଏତେ ବେଶି ନ ଥିଲେ । ଯେତକ ଥିଲେ, ସେମାନେ ସମସ୍ତେ ସ୍ୱାଧୀନଚେତା ଆଉ ଆତ୍ମନିର୍ଭରଶୀଳ ଥିଲେ । ଯାହା କରୁ-ଥିଲେ ନିଜ ହାତେ ହାତେ, କୌଣସି କାମପାଇଁ ପର ହାତକୁ ଅନୁସରଣ କରୁ ନ ଥିଲେ । ତେଣୁ କୃଷି କର୍ମ ପାଇଁ ପର ହାତକୁ ଅନେଇ କାହିଁକି ଖୋସାମତ କରିବେ । କଣ ମିଛ କହିଲି ପଡ଼ିହାଣୀଏ ।

ବାବନ – ନାଇଁ ଆଜ୍ଞା – ପାଠ କଇଲା –

"ଆପଣା ବାହୁର ବଳ ପରିମାଣି,
କରଇ ମନୁଷ୍ୟ ପଥରକୁ ପାଣି ॥"

ବାହିଣୀପତ—କମେ କମେ ଦେଶରେ ଲୋକ ସଂଖ୍ୟା ବୃଦ୍ଧି ହେଲା । ନାନା ପ୍ରକାର ଅର୍ଥକରୀ ପନ୍ଥା ସବୁ ଖୋଲିଗଲା । ଲୋକେ ଚାକିରୀ କରି, ବାଣିଜ୍ୟ, ବ୍ୟବସାୟ କରି, କଳ—କାରଖାନାର ମାଲିକ ମୂଲିଆ ହୋଇ ଅର୍ଥ ଉପାର୍ଜନ କଲେ । ସେହି ଅର୍ଥ ବିନିମୟରେ ଅନ୍ୟାନ୍ୟଙ୍କୁ ଖଟେଇ ଚାଷ କାମ କଲେ । ତାହାଦ୍ୱାରା ହେଲା କଣ ଜାଣିଛ ? କୃଷି ପ୍ରତି ସାର୍ବଜନୀନ ଦୃଷ୍ଟିଲାଘବ ଆଉ ଆଗ୍ରହ କମିଯିବାରୁ କର୍ଷିତ କ୍ଷେତ୍ର ଗୁଡ଼ିକର ଆୟତନ କମେ ସଂକୀର୍ଣ୍ଣ ହୋଇ ଆସିଲା । ଅବହେଳାରେ ହଜାର-ହଜାର ବାଟି ଜମି ପଡ଼ିଆ ପଡ଼ି ଅନାବାଦୀ ହେତୁ ଜଙ୍ଗଲ ହୋଇଗଲା, ଆଚ୍ଛା, ବହୁ ପ୍ରକାର ଜାଙ୍ଗଳିକ ବଡ଼ବଡ଼ ବୃକ୍ଷ, ଲତା, ଗୁଳ୍ମ ଆଦିଦ୍ୱାରା ଭୂମି ସମାକୀର୍ଣ୍ଣ ହେବାରୁ କୋମଳ ଶସ୍ୟ ଉତ୍ପାଦିକା ଶକ୍ତି ଭୂମିର ଲୋପ ପାଇଲା । ଆହୁରି ମଧ୍ୟ ଯଥାର୍ଥ ଯତ୍ନ ଆଉ ଉପଯୁକ୍ତ ଅଭାବରୁ ଶସ୍ୟକ୍ଷେତ୍ର ସାର ହୀନ ହୋଇ କମେ କମେ ଅନୁର୍ବର ହୋଇ ପଡ଼ିଲା । ଫଳରେ ଦେଖ, ବର୍ତ୍ତମାନ ଟଙ୍କାକୁ ଆସି ଦୁଇ ସେର ଚାଉଳ—ହେଲାଣି —ଆହୁରି କଣ ହେବ, କିଏ କହିବ ।

ନକଡ଼ି—ସହର ବଜାରରେ ତ ଦେଢ଼ ସେର, ତେସରେ ଛ'ଛଟାଙ୍କି —ଆଜ୍ଞା, ସେ କଥା କଣ କହୁଛନ୍ତି—ଏ ବର୍ଷ ବିଲବାଡ଼ିର ଅବସ୍ଥା ଯାହା, ବର୍ଷ ଯିମିତ ବାଦ ସାଧିଲାଣି—ଏଥରକ ତ ନିଶ୍ଚୟ ଦୁର୍ଭିକ୍ଷ ପଡ଼ିବ—ପୃଥୀରେ କେତେ କ'ଣ ଉତ୍ପାତ ହେଉଛି ଦେଖନ୍ତୁ। ଆମର ତ ଘେର ଚଣ୍ଡାଳଠଉଁ ବଳି ପଡ଼ିବ। ଲୋକେ ଭୋକ ଉପାସରେ ହାଇଁ ପାଇଁ ହୋଇ—ଖାଲି ତାହାଙ୍କ କୁକୁର ପରି ଛକପକ ହେଲେଣି—କେତେ ସମ୍ଭାଳିବେ ?

ମିଛୁ—ଆଉ ସମ୍ଭାଳିବେ । ସମ୍ଭାଳିବାକୁ ପେଟରେ ନାହିଁ କି ପକେଟରେ ନାଇଁ ।

ବାହିନୀପତି—କୁଆଡ଼ୁ ଆସିବ ହେ ମହାପାତ୍ରେ ? ଆଜିକାଲିକା ପୁଅମାନେତ ଇମିତ କୁଳାଙ୍ଗାର ହେଲେ ଯେ ନିଜର ବେହୃଙ୍କ ଜମି କେତେ ଅଛି ପଚାରିଲେ, ମୁହିଁକୁ ବଲ ବଲ କରି ଅନେଇବେ, ନିଜର ବିଲ କେଉଁଠୁ କେଉଁ ଯାଏ, ଚିହ୍ନି ନାହାନ୍ତି। ନିଜ ଲୁଗା, ଜାମା ଯୋଡ଼ା କାଦୁଅ ହୋଇ ଯିବ ବୋଲି ବିଲ ଉପରକୁ ଯିବେ ନାହିଁ ।

ବାଚନ—ଆଜ୍ଞା, ପ୍ରକୃତ କଥା, କୁଳକ୍ଷୟ ବେଳକୁ କି ଘୋଡ଼ା ମୁହାଁ ପୁଅ ଯାକ ଜନ୍ମ ହେଲେ ଆଜ୍ଞା—ବୃଷ ନାଁ ଧଇଲେ ତାଙ୍କୁ ଇମିତ ଗନ୍ଧଉଛି ଯେ ସେମାନେ ନାକ ଟେକି ନେଟକି ତ ଆଁ ମାରି ଚମ୍ପଟ ଛୁ'—

ବାହିନୀପତି—ଦେଖୁଛତ ପଡ଼ିହାରି ଏ, ତାହାହେଲେ କଣ କରାଯିବ ? ଏଣିକି ଗୁଉଳ ଟଙ୍କାକୁ ଅଧସେର ହେଲେ ବି ମୂଢ଼ି, ଉଖୁଡ଼ା ପରି ମୁହଁରେ ଦି'ଟା ଫାଙ୍କି ଜଳଖିଆ କରି ପାଣି ଯେତେ ପିଇ ଆମକୁ ରହିବାକୁ ପଡ଼ିବ। ଆମେ ଆମର ଅକାଳ କୁଷ୍ମାଣ୍ଡ ବଂଶଧର ଗୁଡ଼ିକଙ୍କୁ ଇମିତ ତିଆରି କଲୁ ଯେ ସେମାନେ ମୁଣ୍ଡକୁ ହାତ ପାଇଲା ମାତ୍ରେ ବାବୁ ସାହେବ ବୋଲାଇଲେ। ଅଥଚ ଏ ପାଖର ବାବୁ ହେଲେ ନାହିଁ—

—କି ସେ ସାଗର ସାହେବ ହେଲେ ନାହିଁ । ଘାସକୁ ଲମ୍ବ, ପାଳକୁ ଶ୍ରେଷ୍ଠ ହୋଇ କେବଳ ବଡ଼ ବଡ଼—କଥାରେ ଲୋକଙ୍କୁ ଚିନ୍ତା କାଟିବା ଶିଖିଲେ । ଆମ ସମାଜର ଯେଉଁ କେତେକ—ଲୋକ ଗୃହ କାମକୁ ନିଜ ନିଜର ବୃତ୍ତି ମନେ କରି ଖରା, ବର୍ଷା, କାକର ସହି କାଦୁଅ—ପାଣି, ରକ୍ତ ପାଣିକରି ବାର ମାସ ଖଟିଲେ, ସେମାନେ ସବୁଦିନେ କଣ ଗମାର—ଥିବେ ? ସେମାନଙ୍କୁ ଠେଲିବା ପାଇଁ ମଧ୍ୟ ନେତା ମାନେ ପରିସ୍ଥିତି ସୃଷ୍ଟି କଲେ ।

ଝିଗଡ଼ି—ସେ କାଳ ପଶାଳ ସଇଲାଣି ଆଜ୍ଞା—ଏଣିକି ସେମାନେ ତ ଆମ କାନ କାଟି ନେବେ । ଏବେ ତ ତାଙ୍କର କେତେ ଢଙ୍ଗ, ସମିତି—କେତେ ଦାବୀ, କେତେ ଆପତ୍ତି—ଠିକେ ଠିକେ କଥାରେ ପହୁଆର, ଧର୍ମଘଟ—

ବାହିନୀପତି—ଠିକ୍ କହୁଛନ୍ତି ସେମିତି ହେବା ଉଚିତ । ସେ ଜାତିଟା ପୁରୁଷାନୁକ୍ରମେ ଖତ—ବୋହି ବୋହି ବାସ୍ତବିକ ଖତର ହୋଇ ଖତ ପାଲଟି ଯାଇଥିଲା । କିନ୍ତୁ ବର୍ତ୍ତମାନ ସେହି ଖତ ସବୁ ଉତ୍କୃଷ୍ଟ ସାର ହୋଇ ସାରିଲାଣି । ସେଥିରୁ ନୂଆ ନୂଆ ଗଛ ସବୁ ବାହାରି ସେମିତି ଜୁଆଁ ମେଲିଲେଣି, ଜଣା ଯାଉଛି, ସୁପ୍ରସନ୍ନା ସୌଭାଗ୍ୟ ଲକ୍ଷ୍ମୀଙ୍କ ଅମୃତ ଦୃଷ୍ଟିରେ ସେହିମାନେହିଁ ଅକ୍ଷୟ ସୁଖ ଶାନ୍ତି, ଧନଜନ ଗୋପଲକ୍ଷ୍ମୀର ପ୍ରକୃତ ଅଧିକାରୀ ହେବେ ।

ଗଣି—ଆଜ୍ଞା, ଅବାଟ ବାଟ ହବ, ଅଭୁଠ ଭୁଠ ହବ, ଅପାଠ ପାଠ ହବ—

ବାହିନୀପତି—ଦେବତା, ଏତୁମେ ତ ମାଳିକା ଆରମ୍ଭ କଲଣି ହେ—ହଉ, ଶୁଣ,—ସର୍ବସାଧାରଣଙ୍କର ନିଜ ବଲବାରିପ୍ରତି ଏଇ ଅନାସ୍ଥାଭାବ ଦେଖି ବର୍ତ୍ତମାନ ଆମର ଲୋକ ପ୍ରିୟ ସରକାର ଇମିତି କଟକଣା ଖଞ୍ଜିଲେଣି ଯେ ଯେଉଁମାନେ ନିଜ ହାତରେ ନିଜ ଜରଜମି ନ ଚଷିବେ କି ଜମିଜମାର ଖବର ନ ବୁଝିବେ,

ସେମାନେ ଜମିର ମାଲିକ ହୋଇ ପାରିବେ ନାହିଁ । ନିଜେ ଚାଷ ଯାହାର, ଜମି ରହିବ ତା'ର ।" ସନ୍ଥ ବିନୋବା ଜୀ— ମଧ୍ୟ ଏହି ବ୍ୟବସ୍ଥାର ମୂଳଦୁଆକୁ ମଜବୁତ୍ କରିବାରେ ଲାଗିଛନ୍ତି । ବର୍ତ୍ତମାନ ମୁଁ ଆମର ପଞ୍ଚପରମେଶ୍ୱରଙ୍କୁ ଜଣାଉଛି ଯେ ତୁମେ ଆମେ ପ୍ରତ୍ୟେକେ ଯେତେବେଳେ— ନିଜ ଜମିକୁ ଯାଇ ନିଜେ ହଳ କରିବୁ, ଖତ ବୋହିବୁ, ବିଲବାଛିବୁ ସେତେବେଳେ ଆମକୁ ବାଛନ୍ଦ କରିବ କିଏ ?

ବାବନ—ଆଜ୍ଞା, କରିଲେ କରିବ ସେଇଜଣେ, ଉପରେ ବସି ଯେ ଦିନରାତି କରୁଛି, ଆଉ କିଏ ବାଲ ପୁଅ କିଏ ?

ବହିନୀପତି—ଆହେ, ସବୁ ତ ଭଗବାନଙ୍କ ଅଭିପ୍ରେତ, ତାଙ୍କର ଇଚ୍ଛା ବିନା କଣ ହେଲାଣି ନ ହେବ । ସବୁ ଯୁଗରେ ଦେଶ କାଳ ପାତ୍ର ବିବେଚନାରେ ଧର୍ମ ଆଉ ନୀତିର—ପରିବର୍ତ୍ତନ ଘଟେ ।

ଝଗଡ଼ି—ଆଜ୍ଞା ହଁ—ଯେଉଁ ଆଡ଼ୁ ପାଣି ଛୁଟମାରେ, ଆମେ ପୁଣି ସେଇ ଆଡ଼କୁ ଛତା ଦେଖଉଛୁ ନା—

ବାହିନୀପତି—ପୁଣି ରାଜାନୁଗତ ଧର୍ମ । ପରିସ୍ଥିତି ଦୃଷ୍ଟିରେ ଯେଉଁ ନୀତି ପ୍ରବର୍ତ୍ତିଇଲେ ପ୍ରଜାମାନଙ୍କର ମଙ୍ଗଳ ଅବଶ୍ୟମ୍ଭାବୀ । ରାଜା ବା ସରକାର, ତାଙ୍କର ଦୂରଦର୍ଶୀତା ଆଉ ରାଜନୀତି ବଳରେ ତାହା ପ୍ରବର୍ତ୍ତାଇ ପାରନ୍ତି । ଏ କିଛି ନୂଆ କଥା ନୁହେଁ । ତେଣୁ—ଆଇନ କଟକଣାରେ ପଡ଼ି ଶାସନ ଦଣ୍ଡ ଭୟରେ ମାଷ୍ଟରଙ୍କ ଆଗରେ ଛାତ୍ର—ଛାତ୍ରୀ ପରି ସେହି କାର୍ଯ୍ୟ କରିବା ପୂର୍ବରୁ ସ୍ୱଇଚ୍ଛାରେ ଆତ୍ମମର୍ଯ୍ୟାଦା ବଜାୟ ରଖି ଆମେ କାହିଁକି ତାହା ନ କରିବା ?

ମିଛୁ—ଆଜ୍ଞା—ତା ଠିକ୍—ଏକ୍ ସଲାମ୍ ନାଇଁ ଶହେ ସଲାମ୍ ଯାଏ କଥା ଯିବ କାହିଁକି ?

ବାହିନୀପତି—ତେଣୁ ମୋର ଭାଇମାନଙ୍କୁ ଅନୁରୋଧ ଯେ ଆମେମାନେ ଆଗପଛ ନ ଭାବି—ଅଙ୍ଗତ ବଶତଃ ଭୋବନ ପାଣିଙ୍କ ପ୍ରତି

ଯେଉଁ କଠୋର ଦଣ୍ଡ ବିଧାନ କରିଅଛନ୍ତି, ତାହା ଉଠାଇ ନିଆଯାଉ ଆଉ ତାହାଙ୍କୁ ଆମମାନଙ୍କ ସହିତ ଏକତ୍ର, ଏକ ଆସନରେ ବସିବାକୁ ଅଧିକାର ଦିଆଯାଉ ।

ସମସ୍ତେ—ଆଜ୍ଞା, ହଁ—ଏବେ ସେ ଆସନ୍ତୁ, ଆମର ଆଉ କୌଣସି ଆପତ୍ତି ନାହିଁ ।

ବାହିନୀପତି —( ଶ୍ରୀବନ ପ୍ରତି ) ପାଣିଏ, ଉପରକୁ ଆସ ।

( ଶ୍ରୀବନ କାନ୍ଦ କାନ୍ଦ ହୋଇ କୃତଜ୍ଞ ଭାବରେ ଅତି ସନ୍ତର୍ପଣରେ ଉପରକୁ ଆସି—ବାହିନୀପତିଙ୍କ ଗୋଡ଼ତଳେ ପଡ଼ି ଅନ୍ୟ ସମସ୍ତଙ୍କ ଔଳକ ହୋଇ ସମସ୍ତଙ୍କ ସହିତେ ବସିଲେ )

ବାହିନୀପତି—ବର୍ତ୍ତମାନ ଆମର ଏକାନ୍ତ କର୍ତ୍ତବ୍ୟ ହେଉଛି, ସମସ୍ତେ ମିଳିମିଶି ପାଣିଙ୍କର—ଦୁଃଖ ଦୁର୍ଦ୍ଦଶା ମୋଚନ ନିମିତ୍ତ ପ୍ରାଣପଣେ ଚେଷ୍ଟା କରିବା । ତାହେଲେ ଆମର—ବାଞ୍ଛିତା, ବଡ଼ପଣିଆ ଆଉ ଆମର ଶାସନର ସମ୍ମାନ, ଗୌରବ ଅକ୍ଷୁର୍ଣ୍ଣ ରହିବ ।

ପଣି—ନିଶ୍ଚେ, ନିଶ୍ଚେ,—ଆଜ୍ଞା ଆମେ ସାହାଯ୍ୟ କରିବୁ ।

ବାହିନୀପତି—ମୁଁ ମୋର ଲଙ୍ଗଳ, ବଳଦ, ହଳଆକୁ ଶ୍ରୀବନଙ୍କ ଦେଇଛି । ତାଙ୍କର ହଳ କାମ ସରିବା ପର୍ଯ୍ୟନ୍ତ ସେଗୁଡ଼ିକ ଇଚ୍ଛା ଅନୁସାରେ ପାଣିଏ ବ୍ୟବହାର କରିପାରିବେ ।

ଖଡୁ—ଆଜ୍ଞା—ସେଦିନ ମୁଁ ଦେଖି କି ପସ୍ତ ତାଙ୍କ କଣକ ଅଣ୍ଟିମ୍ବିତ୍ ହୋଇଗଲି । ମୁଁ—କଇଲି—କି,—ତାଙ୍କ କଣକ ବାବୁଘର ହଳଆ, ଲଙ୍ଗଳ, ବଅଲ କାଇଁକି, ତାଙ୍କ କଣକ ଶ୍ରୀବନ ପାଣି ବଲରେ—ବୋଧେ, ବାବୁ, ତାଙ୍କ କଣକ ଜମି ଖଣ୍ଡିକ ନେଲେଣି ।

( ସମସ୍ତଙ୍କ ମୁହଁରେ ହସ ଫୁଟି ଉଠିଲା )

ନକଡ଼ି—ହେଲଃ—ତା'ବିଲରେ ଯାହା କିଛି ବିହନ ଦରକାର, ମୁଁ ଯୋଗେଇବି ।

ଝଁଗଡ଼ି—ଆଜ୍ଞା—ମୋ ଖଗରେ ଖତଯାକ ରହିଲା—ବିଲ ଖଣ୍ଡକରେ ଯେତେ ଲାଗିବ, ମୁଁ ଦେବି ।

ଗଣି—ମୁଁ ତା'ବାଡ଼ି ଅସ୍ଥକରେ ବାଡ଼ ଘେରେଇ ଦେବି ଆଉ ବାଇ-ଗଣ, ଲଙ୍କା, ମକକା—କାକୁଡ଼ି, ଶିମ, ଆଉ ଆଉ ପନିପରିବା ଚଳି ଲଗେଇବାକୁ ଦେବି ।

ବାବନ—ମୁଁ ଏଇଷିଣିକା ତା'ର ଚଳାଚଳର ଭାର ନଉଛି । ପାଣିଏ, ତୁମେ ତ ମାମୁଁ ମାଈଁ ଦି'ପ୍ରାଣୀ ଆଜିଠଉଁ ମୋ ଘରେ ଖିଆପିଆ କରିବ । ତୁମ ଘରେ ବେଷାଇ କରି ଖାଇବାକୁ ଇଚ୍ଛାକଲେ ମଧ ମୁଁ ସବୁ ସରଞ୍ଜାମ ଯୋଗାଇ ଦେବି । ଯାହା କହିବ, ସବୁଥିରେ ମୁଁ ରାଜି ।

ବାହିନୀପତି—ଆଉ ପଧାନେ, ପାଣିଙ୍କ ପାଇଁ ତୁମେ କି ସାହାଯ୍ୟ କରିବ, କହିଲ ନାହିଁତ ?

ଖତୁ—(ହାତଯୋଡ଼ି) ଆଜ୍ଞା, ମୁଁ କିବା ନୋକ, ତାନାଁ କଣକି, ଆପଣମାନଙ୍କର ଚରଣର ମଳିଟାଏ । ହଉ, ହେଲଃ—ମୁଁ ତାଙ୍କ ପାଖେ ପାଖେ ତାନାଁ କଣକି ରହି ସବୁ କାମ—ଦେଖେଇ ଦେବି, ଶିଖେଇ ଦେବି । ଆଉ ତାନାଁ କଣକି ଫସଲ ଉଠିରିବା ଯାକେ ଯାହା କିଛି ଯନ୍ତ୍ରର ପାତି ଲୋଡ଼ା, ସବୁ ମୋ ଘରୁ ଯୋଗେଇବି । ତାନାଁ କଣକି—ଓଳିଆ ମାରି ଧାନ ଗଣ୍ଡାକ ଘରେ ତୁଲେଇ ଦେବି । ଖଳାବାଡ଼ିରେ ତାନାଁ କଣକି ଚୁଣଯାକ ବଦାଡ଼ି ମାରିଦେବି ।

ବାହିନୀପତି—ସାବାସ୍ ପଧାନେ, ଭଗବାନ୍ ନିଶ୍ଚୟ ତୁମର ମଙ୍ଗଳ କରିବେ ।

ମାର୍କଣ୍ଡଆ—ଆଜ୍ଞା—ଆମେ ପୁରେଇତଙ୍କ ଘର ଛୁଆଣୀ କରିଦବୁ ।

ବାହିନୀପତି—(ତୃପ୍ତିର ମହୋଲ୍ଲାସରେ ଦୁଇଧାର ଆନନ୍ଦାଶ୍ରୁ ବହିଗଲା—ଯୁକ୍ତକରରେ ଊର୍ଦ୍ଧ୍ୱକୁ ଚାହିଁ ନିବିଷ୍ଟ ଚିତ୍ତରେ କହିଲେ ) ହେ ବିଶ୍ୱର ସ୍ରଷ୍ଟା, ତୁମେ ବିଶ୍ୱବ୍ୟାପୀ, ବିରାଟ ତୁମର ସୃଷ୍ଟି ପ୍ରକୃତରେ ମଧୁମୟ—କେବଳ ସଂହତ ଶକ୍ତିର ପ୍ରେମସିକ୍ତ ବିରାଟ ପ୍ରାଣ ସେହି ମଧୁରତା ଆସ୍ୱାଦନ କରିପାରେ । (ଆଖିବୁଜି ପୁଣି କହିଲେ)

"ସର୍ବେ ଭବନ୍ତୁ ସୁଖିନଃ ସର୍ବେ ସନ୍ତୁ ନିରାମୟାଃ ।
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିତ୍ ଦୁଃଖ ଭାଗ ଭବେତ୍ ॥"

(ଆଖି ପୋଛିଲେ) ଭାଇମାନେ, ଆଜି ମୋର ବଡ଼ ଭାଗ୍ୟର ଦିନ—ପାଉଁଶ ତଳ ନିଆଁ ପରି ତୁମମାନଙ୍କର ଭିତରେ ଲୁଚିରହିଥିବା ମନୁଷ୍ୟତା ଏତେ ଦିନେ ପ୍ରକାଶ ପାଇଛି । ଏହାଠାରୁ ବଳି—ସୁଖର ବିଷୟ ଆଉ କଣ ହୋଇପାରେ । ଆମ ମଧ୍ୟରେ ଏହିପରି ସ୍ନେହ, ମମତା ଆଉ ସଦ୍ଭାବ ସବୁଦିନେ ରହିଥିଲେ, ସଂସାରର ଯାବତୀୟ ଦୁଃଖ ବିପଦ କେବେଁ ଆମକୁ ବାଧିବ ନାହିଁ । ହିନ୍ଦୁମାନେ ସମାଜ ଗଢ଼ି ଏକସ୍ଥାନରେ ରହିବାର ମୂଳ ଉଦ୍ଦେଶ୍ୟ ହେଉଛି ଏଇ "ସହଯୋଗୀତା" —ସମସ୍ତେ ସମସ୍ତଙ୍କ ସୁଖ ଦୁଃଖରେ ସାହାଯ୍ୟ କରିବାର ଅନ୍ୟ ନାମ ହେଉଛି ବନ୍ଧୁତା । ଆମେ ଯଦି ସମବାୟ ସୂତ୍ରରେ ପ୍ରତ୍ୟେକ କାର୍ଯ୍ୟକରି ପାରିବା, ଆମର ସଂସାର, ଅଖଣ୍ଡ ସୁଖ ଶାନ୍ତିରେ ସ୍ୱର୍ଗ ପାଲଟି ଯିବ ।

ବାବନ—ଆଜ୍ଞା, ସେଇ ବିଷୟଟା ଦୟା କରି ଟିକିଏ ବୁଝାଇ—

ମିତ୍ରୁ—ନା—ନା—ବାବୁଙ୍କର ଖାଇଲାବେଳ ଗଡ଼ିଗଲାଣି । ଭାତ ଗଣ୍ଡିକ କୁଆ ପଥର ହବଣି ।

ଝଂଗଡ଼ି—ବାବନ ପଡ଼ି ଆସି ତ ଅଲେଖ ନିରଞ୍ଜନ ବାଲା—ସାତଚିନ୍ତା ତାର କଣ ଅଛି ଯେ ସେଥିକି ତରବର ହବ ।

ବାହିନୀପତି—ଆଚ୍ଛା, ଆଉଦିନେ ସମବାୟ ବିଷୟ ମୁଁ ଭଲକରି ବୁଝାଇବାକୁ ଚେଷ୍ଟା କରିବି ପାଣିଏ, ବର୍ତ୍ତମାନ ତୁମକୁ

ଯଥାସାଧ୍ୟ ସାହାଯ୍ୟ କରିବାକୁ ଭାଇମାନେ ପ୍ରସ୍ତୁତ । ଏଥର ତୁମର ସମସ୍ତ ଶକ୍ତି ଖଟାଇ ଲାଗିପଡ଼ । ତୁମର ଅକ୍ଳାନ୍ତ ପରିଶ୍ରମ ଆଉ କାର୍ଯ୍ୟ ତତ୍ପରତା ଉପରେ ସବୁକଥା ରହିଲାଣି ।

ଘୋଷଣା—ବ୍ରତମାନଙ୍କୁ ନଟେଷ୍ଟଁ ନାଗିଯିବ ଆଜ୍ଞା—

( ବାହିନୀପତି ଉଠିବା ସଙ୍ଗେ ସମସ୍ତେ ଉଠୁଥିବାବେଳେ )

## ଷଷ୍ଠ ପରିବର୍ତ୍ତନ



# ପଞ୍ଚମ ଦୃଶ୍ୟ

## ମଉଗଜପୁର ବିଲବାଟ

ମୁଣ୍ଡରେ ପାଣି ମାଠିଆଟିଏ, ହାତରେ କନାଖଣ୍ଡିକରେ ବନ୍ଧା ହୋଇଥିବା—ଟେଙ୍କାଭତ କଂସା, ଲୁଣ, ଲଙ୍କା, ପିଆଜ ଆଉ ଶାଗ ଖରଡ଼ା ନେଇ ବିଲକୁ—ଯାଉଥିଲା ଓଥସ୍ତି—ତାହାକୁ ଦେଖି ଗଛ ଆଢୁଆଳରେ ଲୁଚି ଯାଇଥିଲା ମାର୍କଣ୍ଡିଆ । ସେତେବେଳେ ଓଥସ୍ତି ମନ ଖୁସିରେ ଗାଇ ଗାଇ ଯାଉଥାଏ ଗୋଟିଏ ଗାଉଁଲି ଗୀତ ।

(ଗୀତ—) ଉଡ଼ି ଉଡ଼ି ଗଲେ ଭଦଭଦଳିଆ ପଦୁଅଁ ପୋଖରୀ ତେଇଁ
ଗୋ ସ୍ବରୁ ନବଙ୍ଗନତା, ପଦୁଅଁ ପୋଖରୀ ଅକାତ ପାଣିରେ
ଙ୍ଗୁଲୁଚି ନେଳିଆ କଇଁ ଗୋ ସ୍ବରୁ ନବଙ୍ଗନତା ।
ନେଳିଆ କଇଁର ଟେକ ପତର ଯେ ଘେରିଛି କମଳ ଲଟି
ଗୋ ସରୁ ପୋହଳାମାଳି, କଳମ ଶାଗ କେ ଦିଅନ୍ତା ଖରଡ଼ି
ଠିକ ଠିକ ହୁଏ ପାଟି ଗୋ ସରୁ ପୋହଳାମାଳି ।। ପାଟି
ଥରଚୁଆ ଛଡ଼ା ହିଡ଼ିମିଷ୍ଟ ହିଁଡ଼ କଢ଼େ ବୁଦା ବୁଦା ଗୋ ରଙ୍ଗ
ମହୁଲା ପାନ, ବୁଦ୍ଧି ହୁଡ଼ିଯାଏ ସେଣ୍ଟି କଇଁଯା ରେ ଆଖି
ଯେବେ ହୁଏ ନିଦ ଗୋ ରଙ୍ଗମହୁଲା ପାନ ।। ନଈ ପଠା
ଲୁଦେ ଖରଖରିବଣ ଉଡ଼ୁଚି ଚଢ଼ଇଁର ଧାଡ଼ି ଗୋ ରସ
ଯାଉଁଳି ମୁଦ, ମୁଟିଏ ଟଙ୍କାକୁ ଆଣିଥିଲେ ଧନ କଦମ ଫୁଲିଆ
ଶାଢ଼ୀ ଗୋ ରସ ଯାଉଁଳି ମୁଦ ।।

(ଏଭଳି ବେଳେ ପଛୁଖୁ ଅତର୍କିତ ଭାବରେ ଆସି ମାର୍କଣ୍ଡିଆ ବଡ଼ ପାଟିରେ ଡରେଇଲା ପରି ଡାକ ଦେଲା)

ମାର୍କଣ୍ଡ—ଓଥସ୍ରୀ···ଇ···ଇ···ଇ···ଇଃ···

ଓଥସ୍ରୀ—(ସ୍ଲନଆରେ ଚମକ ପଡ଼ି, ବାହୁରେ ଚେଙ୍ଗ ପକାଇ) ଏଁ'—ଏ ଗୁରୁଙ୍କ କଥା ମୁଁ—ଚେଷ୍ଟପର ମିଶିପ—ଦେଖୁଛୁ ଅସହାଙ୍କ ନୋକଠା—ସଦାବାଠ, ଫେଣେ ଉଦୁ ଉଦାଆ ବାଂସହର ଖରଚେର—ତମର କଣ ଠିକଏ ହେଲେ··· ·····

ମାର୍କଣ୍ଡ—ଅକଲ ନାଇଁ କଉଚୁ ତ ? ଅଛି ଲୋ ଢେର ଅଛି— ସେଇଥି ନାଗି ତ ଆଗରୁ ସିଆଣା ଦେଇ କାଉଁସୀ କାମ ଚଣ୍ଡୀଙ୍କ କୋଠି କୋଠି ଆଖିରେ ବେପରୁଆ ହେଇଚି— ଦେ'ଖେ, ତୋ ଡେଙ୍ଗରି ହାତରେ ଯଉଁ ଡଉଁରିଆ ବାନ୍ଧି ଦେଇଛି—ସେ ସମାନ ଚିଜ ନୁହେଁ ଲୋ—ମଙ୍ଗଳ ସେଠୀର ଅକାଠ ପଦ···

ଓଥସ୍ରୀ—ହାଃ ହଁ—ଅକାଠ ହଉଚି, ଇ'ନାଗେ ମୁଁ ତ କାଠ ପାଲଟି ଯାଇଥାଆନ୍ତି—ଆଉ ଟିକେ ପାଣି ମାଠିଆଟା ଠିକ୍ ଠିକ୍ ହେଇ ଯାଇଥାଆନ୍ତା—କଂସାକ ଯାକ ଭିତ ତଳେ ଉଡ଼ି ନାରଖାର ହେଇ ଯାଇଥାନ୍ତା କି ନାଇଁ ? ନା—ସେଥେଇଁକି ତମ ଡଉଁରିଆ କାହୁଁ କରିବ ?

ମାର୍କଣ୍ଡ—ଏଇ ଯଉଁ କଥା କଉ ଲୋ ଓଥ—ହଉ, ଘୁଟେଡ଼— ମୋର ଭାଇଲା ତୋର କପୁରୁ ଦବୁ, ଦବୁଠି, କଣ ଆଣିଛୁ— ଗୁଣ୍ଡିଏ ଖାଇ ମୁନ୍ଦିଏ ପାଣି ପିଇଁ ଦିଏ—ଭୋକରେ ମୋ ହୁଁସା ଉଡ଼ିଲଣି—(ଗଛ ମୂଳରେ ବସି ପଡ଼ିଲା)

ଓଥସ୍ରୀ—(ମୁଣ୍ଡରୁ ପାଣି ମାଠିଆଟା ଓହ୍ଲାଇ ରଖି, ଭାତ କଂସାରୁ କନା ଖଣ୍ଡିକ ଫିଟାଇ ମାର୍କଣ୍ଡ ଆଡ଼କୁ ବଢ଼ାଇ ଦେଇ ଅଭିମାନ କରି ବସିଲା—)

ମାର୍କଣ୍ଡ—(ଭାତ କଂସାଟା ପାଖକୁ ଟାଣି ଆଣି ତରବର ହୋଇ ଖାଉଁ ଖାଉଁ) ଇଏ ପେଣେ, କଉଁ ଅଧ୍ୟା ଖୋଲଲ ?

ଉଥଶୀ—ମନକଷ ପର୍‌କୁଭ ମଲେ ଭୁଟେ—"ମେତେ ଯେତେ ବୋଲିବୁ ବୋଲ୍, ମୋ ବାହାଟା ଯାକ ପୋଲ୍—" କାରକ ତ ତେମେ ସେଇୟା—

ମାର୍କଣ୍ଡ—ଓହୋ···ହୋ···ହୋ···ଜାଇଁଲି। ଠାସକରେ କଇଦେଲୁ—ତୋ ନାଆଁଟା କଅାଁ—ଧରିଲି ? ଏଇତ ?—ହଉ, "ଭୁଉ ବଗୁଲିକୁ ବଗ, ଏଠେଇଁ ଆଉକଏ କାନେଇଛି ଯେ ତେହିଁକ ଏତେ ରଗ" ହଉ, ମୋ ଉପରେ ପଇସାଏ ଜରିମାନା କର ପଛକେ—

ଉଥଶୀ—ମେତେ ଏ ଠାପସ୍କୁ କି ମିରିବ ଲୋ ମା—ଶୁଖିଲା ଶୁଆଗ ଗୁଷ୍ଠକ ତେଣେ ରଖିଦେଇ ଥା'—ଦାଣ୍ଡି.ଗୁଣା, ମଥାମଣିକୁ ବନ୍ଧା ପକେଇ ନଚିନ୍ତ ହୋଇ ବଇଛୁ ଯେ କେବେ ଦାବ କଇଲ ? ଗତସନ କଇଥେଲ ପା' ମାଣ ବସା ନୁବୁବାର ଡେଇଁଗଲେ ପହିଲା ପୁଷରେ ଲୁଟେଇ ଆଣିବ। କାଇଁ ? ଷ୍ଟେବୁଅ ଅଧ ହେଲାଣି ପା'···

ମାର୍କଣ୍ଡ—ଆଲୋ ଘାବସ୍ ହୋ'ନା—ସବୁ ଆଣି ଦେବ—କପାରଟା ଫିଟିଗଲେ ସାତ ସେତକ ଗଢ଼ିଦେବି ଲୋ ଉଥ—

ଉଥଶୀ—ଆଉ କୋଉ କାରକୁ କପାର ଫିଟିବ ମଁ—ବାର କେରିକ ଟୋଠ ହେଲେ ନା ଦାନ୍ତ ତକ ଚଡ଼ି ନାକ ଘୁଷୁରିଲେ ?

ମାର୍କଣ୍ଡ—ଆଲୋ, ମାହା.ପ୍ର ବୁଇଁଲେ କାଲି ସକାରେ—ଆମ ଲକ୍ଷ୍ମୀବନ ପୁରେଇତ ଘଟଣା ଦେଖୁ ଛୁ ତ ? ମାଇପ ଧାନକୁଟି ମୁଲ ଗୁଉର ଗଣ୍ଡାକ ଆଇଁଲେ ଚୁଲି ଜରିବ, ନଇଲେ ନିରଜଶ ଉପାସ—ତା'ରି ଫେଣେ ଦେଖେ—ଦଶା ହାଟିଲା, କପାର ଫିଟିଲା ନା—ଇ'ନାଗେ ଗାଁ ଗୋଠାକର ନୋକ ଗୁଏଁ ଗୁଏଁ ତା' କାମରେ ନାଗିଛନ୍ତି—କିଏ ବାଅନ ଦଉଚି, କିଏ ଖଡ଼

ଯୋଗାଉଚି, କିଏ ବାଡ଼ ବୁଜୁଚି, କିଏ ବଲ ବାଛୁଚି, କିଏ ଭୁଣୁଆ—କରୁଛି—କିଏ ଘର ଘୂଇ ଦଉଚି—କଅ, ଆଜିଯାଏ ହଉ ନ ଥେଲା—ସବୁ କପାର ଲୋ—ଏଇ କପାର ।
(ମାର୍କଣ୍ଡ ଡାହାଣ ହାତ ବଣି ଆଙ୍ଗୁଠିଟା କପାଳରେ ମାରିଲା)

ଓଅସ୍ତି—ହଉ ଏଥର ତ ପୁରେଇତ ଘର ହରିଆ ହେଇଚ—ହାତେ ହାତେ ସବୁ କରୁଛ—ଧରୁଚ—ଦେଖିବା ଯେ ।

ମାର୍କଣ୍ଡ—କଅଣ କଇବ ଲେ—ଖେତ ଖାଲି ଉଚ୍ଛୁରୁଚି—ଯା' କଅନ୍ତ—ସୂନା ଫରିଚି—ବଲବାରି ସବୁ ଉଠିଆ—ଓରିଡର ନଙ୍କାମାରିଚ ଗଚ୍ଛଟାରେ ବା ଏତେ ଫର ଧରିଚି !

ଓଅସ୍ତି—ମଲ, ଗାଆଁଟା ଯାକର ନୋକ ଯଉଁ ଥେରେ ନାଗିଛନ୍ତି, ତା' ଆଉ ହୁଁ ନ୍ତା ନାହିଁ କ ?

ମାର୍କଣ୍ଡ—ହୁଁ, ଗୋଟାଏ କଥା ପୁରେଇତେ ମେତେ କଉଥେଲେ —"ଆରେ ମାର୍କଣ୍ଡିଆ, କାଙ୍ଗାରି ଗ୍ରଉତ ଗୁରିଆଟା କାଇଁକ ପଡ଼ିଚୁ, ଆମର ତ ବଲବାରି କାମ ଧଇଲୁଣି—ତୋ ଉସ୍ତିସ୍ତିକ ନେଇକ ଆମ ଘ'ଠିକ ଗୁଲିଆ'—ଖଞ୍ଜା ତରଲୁ ବା'ବଖୁରି ଘର ତୋରିଦେବୁ ଯେ ସେଠେଇଁ ବା'ପସ୍ୱଣୀ ରଇବ । ତେତେ କୋଟିଆ କରି ରଖିବ, ଆଉ ତୋ ଭାରିଯା—ଆମ ଘରର ବାସିପାଇଟି କରିବ, ଭଲ ମନ୍ଦ ଖବର ବୁଝି ପୁରେଇତଆଣୀର ବୋଲ ହାକ କରିବ—" ତୋ ଇଚ୍ଛାଟା କଣ କଇଲୁ ? ମଙ୍ଗିବ ?

ଓଅସ୍ତି—ମଲ, ମେତେ ଫେଣେ ଇଚ୍ଛା ପସ୍ରୁଚ କଆଁ ମଁ—ତେମେ ଗଚ୍ଛ ମୂରରେ ରଇଲେ—ମେତେ ସେଇ ସରଗ—କହିଁଜା ନାଜା ତ, ଗୋଟାପଣେ ଭୁରୁସା—ମାଛିକୁ ମଁ ବେଲ— କଇବ ନାହିଁ—ସେ କ'ଣ ନାକେଲ୍ଗ କ ? ତା ଘରେ ରଇବାକୁ କିଏ କାହିଁକି ନାମଙ୍ଗ ହବ !

ମାର୍କଣ୍ଡ—(ଭାତ ପ୍ରଭୃତି ଖାଇସାରି ମାଠିଆରୁ ପାଣି ପିଇ ଓ ଓଥସ୍ତି କାନରେ ହାତ ମୁହଁ—ପୋଛିଲ—କାନ ଗଣ୍ଡିରୁ ଦୋକତା, ଚୁନ କାଢ଼ି ଟିପରେ ଦଳୁ ଦଳୁ କହିଲା) ଏତେବେଳେ ମୋ ଗଣୀଠା ଦେଖି ବ'ପଦ କଇଲୁ—ନ ହେଲେ କ ଓଥ, (ଜିଭ କାମୁଡ଼ି ପକେଇ) ଓଥସ୍ତି—ଫେଣେ ?

ମାର୍କଣ୍ଡ—ଓହୋଃ, ମୁହିଁଠାରୁ ଖସିଗଲାରୁ—ହୋଓବ ରଉନାଇଁ ଲେ—ହଉ, ହଉ, ଆଉ ତ ସ୍ବରି, ଛଅ—ମାସର କଥା—ରୁ ଗୋଟିକର ମାଆ ହେଇଗଲେ, ଅଉ କଏ ତେତେ…॥

ଓଥସ୍ତି—ଯାଃ—ଏବୁବେଳେ କେତେ ଗ୍ଲେପସ୍ତ ହଉ ଥ' ମଁ—(ଜଂଘାଟି ଧୋଇ ପୁଣି କନାରେ ବାନ୍ଧ ହାତରେ ଝୁଲେଇଲା—ମାଟିଆକୁ ମୁଣ୍ଡେଇଲ—)

ମାର୍କଣ୍ଡ—(କଣ ଯେମିତ ମନେ ପଡ଼ିଗଲା) ଆଲେ ହେଏ, ଭାଗା-ରିଆ ଭଇ କ ନବେଇ ଦେଇ ଆଇଥିଲ—ସଧାନ ଖାଲ ହେଁଠାଲୁଥବ ଲେ—ମୁଁ ଯାଉଛି—(ଦୌଡ଼ି ଦୌଡ଼ି ଗ୍ଲଲ-ଗଲା)

ଓଥସ୍ତି—ମା' ମଙ୍ଗଳ ଲେ, ସତେ ମୋ ଗୁଆସ୍ତି ଶୁଣିବୁ ମା—(ଆସିଥିବା ବାଟରେ ଫେରିଗଲା)

## ପଞ୍ଚ ପରିବର୍ତ୍ତନ



# ଷଷ୍ଠ ଦୃଶ୍ୟ

## ଗାଁ ମୁଣ୍ଡ ଝଙ୍କାବର ମୂଳେ ବାଟମଙ୍ଗଳଙ୍କ ଆସ୍ଥାନ

(ମଝିରେ ଯେଉଁ ବଡ଼ ପଥରଟି ସିନ୍ଦୂର ଲିପା ହୋଇ ଗଛକୁ ଡେରା ହୋଇଛି—ସେ ହେଉଛନ୍ତି ବୁଢ଼ୀ ମଙ୍ଗଳା—ଆଉ ଅନେକ ଗୁଡ଼ିଏ ଛୋଟ ବଡ଼ ମଝିଲା ଭଳି ପଥର ଜମା ହୋଇଛି, ସେ ସବୁ ହେଉଛନ୍ତି—ମଙ୍ଗଳାଙ୍କ ବଉଁଶ—ପୁଅ, ଝିଅ, ନାତି ନାତୁଣୀ, ଅଣନାତି, ପଣନାତି ଇତ୍ୟାଦି—ସବୁଥିରେ ସିନ୍ଦୂର ଟିପା, ଚନ୍ଦନ ଛିଟ ଲାଗିଛି। କେତେଗୁଡ଼ିଏ ମାଟି ଘୋଡ଼ା ସ୍ୱଖଣ୍ଡକଆ ଠଉଁ ଆଙ୍ଗୁଳିଏ ପର୍ଯ୍ୟନ୍ତ ପାଖରେ ଥୁଆ ହୋଇଛି—ମଙ୍ଗଳାଙ୍କ ଅଣ୍ଟା ସିଧାରେ ବେଢ଼ା ହୋଇଛି ଖଣ୍ଡେ କଳାଶାଢ଼ୀ—ଫୁଲମାଳ ଲମ୍ବ-ଭାବରେ ଝୁଲୁଛି—ଝୁରା ଫୁଲଗୁଡ଼ିଏ ତଳେ ବିଛା ହୋଇଛି ତାଙ୍କର ବଉଁଶଙ୍କ ଉପରେ—ଆଗରେ ମାଟିଦୀପ, ଧୂପଦାନୀ, ଚନ୍ଦନପେଡ଼ି, ଭୋଗହାଣ୍ଡି ଥୁଆ ହୋଇଛି—ଭୁବନ ପଣ୍ଡା ପୂଜାରେ ବ୍ୟସ୍ତ—ଗଳ-ଲଗ୍ନୀକୃତ ବସ୍ତ୍ର ହୋଇ ଭୋବନୀପାଣି ହାତଯୋଡ଼ି ଆଗରେ ବସି-ଛନ୍ତି—ଗଛମୂଳରେ ଗୋଟିଏ କଡ଼କୁ ଆଡ଼ ହୋଇ ଶଙ୍କର ମା, କଞ୍ଚନୀ ଆଉ ଓଥଣୀ ବସିଛନ୍ତି। ଭୋବନୀଙ୍କ ପାଖରେ ଝିଗଡ଼ି, ନକଡ଼ି ଓ ଦାରୁକୁ ଘୁଞ୍ଚି ଅପର୍ତ୍ତି ଆଉ ମାର୍କଣ୍ଡିଆ ବସିଛନ୍ତି। ବରଗଛ—ଗଛ ଓହଳ ସନ୍ଧିରେ ଯନ୍ତାଳ ଖନ୍ଦା ଯୋଗାଡ଼ ଲାଗିଛି ଆଉ ଗାଁର ସୁଆନ ସୁଆନ—ଟୋକା ଦଳେ ବେଶହୋଇ ଗୀତଗାଇ ମନ ମଉଜରେ ନାଚୁଛନ୍ତି)

ପୁ—(ଏବେ) ସୁଖର୍ ଦିନ ଅଇଲା···ମଉଜ ଦିନ ଅଇଲା···
ଚଷାର୍ ଝିଅ ଲୋ···ଓଡ଼ିଆ ବୋହୂ ଲୋ···ଓ···ଓ···

ତୋର୍ ସିନ୍ଦୂର କଲି ମାଙ୍ଗରେ ଚହଟ ଲାଲି ଢୋରି ଠାଣି ଦେ
ଢୋରି ଠାଣି ଦେ ।

ସ୍ତ୍ରୀ—ଲେଟଣୀ ଗଭକୁ ଶୋଭା, ଝୁମ୍ପ ଝୁମ୍ପ ଘୁଙ୍ଗୁର ଲଗା
ଗୋଜି କାଠି ଗୁଞ୍ଜି ଯାଇ ଫୁଲ ଲୋ···ଘର ଗଜର ମୂଳେ···
ତୁଳସୀ ଚଉଁରା ମୂଳେ ନିତ ପାଣି ଦେ···ନିତ ପାଣି ଦେ ।୦।

ପୁ—ଧିକ ଧିକ ଧିନ ଧିନ୍ ତା ଧିନ—ଧିକ ଧିକ ଧିନ ଧିନ୍ତା ଧିନ···
ଧିକ ଧିକ ଧିନ ଧିନ୍ତା—ସୁଖର୍ ଦିନ ଅଇଲା × ×
ଢୋରି ଠାଣି ଦେ ।

ସ୍ତ୍ରୀ—ନାକରେ ନାକ ଚଣା ଦଣ୍ଡୀ ବସଣୀ ଗୁଣା
କାନେ ଗଣ୍ଡିଆ ଚମ୍ପା କଲି କି,

ପୁ—( ଆଉ ) ବେକରେ ନାଇବୁ ହରଡ଼ ଫାଳ ତୁ
ଧାନୁଆ ହାଂସରି ତଳକି;

ସ୍ତ୍ରୀ—ଓଲଟ ମଇର ଝଡ଼ି ପିନ୍ଧୁ ଜାଡ଼ିଆ ଶାଢୀ
ଛୁପ ଛୁପିକା ଛିଟ ଅଙ୍ଗୀ ଆଣି ଦେ···ଆଣି ଦେ । ୨ ।

ପୁ—ଟେ ଧଇ ଧେଇ ଧେଇ···ଧେଇ ତିନ୍ଧାକ୍ ଧିଘିନା ଧିନା, ଧିନ୍ଧାକ
ଧିଘିନା ତିନା ( ୨ )

ଖଡୁ ପଇଁଚି ବଟଫଳ ବାହିରେ ବାଜୁ ଭୁଣ୍ଡି ଝୁଲଇ,
ପାଦେ ପାହୁଡ଼ ବଳା ଝମକ ଝୁଣ୍ଟିଆ ଲୋ କଟକୁ ଆଣି
ଦେବି ମୁଲଇ,

ସ୍ତ୍ରୀ—ମଗୁଣିରର ମାଣ ପୂଜାକୁ ଖିରିସା ପାଣି ସରୁଚକୁଳି ଆରିସା
ପିଠା ନଡ଼ିଆ କେଳି

ପୁ—କରିବୁ ତୁହିଁ ପତ୍ର କାଗଜ ଛେନାର୍ ପୁର
ଆଜହୁଁ ଗୁମାନ ହିଡ଼ ବନ୍ଧ ହାଣିଦେ···ହାଣିଦେ । ୨ ।
( ନାଚି ନାଚି ଚାଲି ଗଲେ )

ଖଲୁପଧାନ—( ନେପଥ୍ୟରୁ ଡାକ ଡାକ ପହଞ୍ଚିଲେ ) ମାର୍କଣ୍ଡରେ ...ହେ ମାର୍କଣ୍ଡିଆ...ତା ନାଁ କଣ ତ ପାଖୁଠରେ ବଇଚୁ ଯୁ ତା ନାଁ କଣ ଙ୍କ ପଗୃଣେ ଡାକରେ ଓ—କରୁନ୍—

ମାର୍କଣ୍ଡ—ନାଇଁ ପଧାନେ, ଟିକଏ ଘୁଇ ନିଦ ନାଗି ଯାଇ ଥେଲା— ଦିହଠା କାଉନା ଅଛିନା—

ଖଲୁ—ବୋପାଲେ ନିଦ—ତା ନାଁ କଣକି, ଠେଆ ଠିଆ ନିଦ, ବସୁ ବସୁ ନିଦ—ହଉ, ହଉ ଯ୍ବ'ଲେ, ମସଲ ଭିଡିଏ ବାଠି ଦବୁ ( ମାର୍କଣ୍ଡ ଉଠିଗଲା ) ତା ନାଁ କଣ କ ଆଉ ଦେଖେ, ମିଞ୍ଜିଇକି ବାଠିବୁ—ଏଁ ?—ହୁଁ (ଅପର୍ଣ୍ଣି ପ୍ରତି) ବାସ ଅପର୍ଣ୍ଣି ତା ନାଁ କଣ କି, ଜାଲ ନଘଠ ଧଇଲଣି—ଯାଆକି ଆମ ଚାଇରୁ ତା ନାଁ କଣ ତ ଦ'ଗୁରି ଗୋଗ୍ଲ ଜାଲେଣୀ ଧରି ୯ପଠି ଆ ( ଅପର୍ଣ୍ଣି ଗଲାପରେ ) ଏଇଟି ଥେଲା ଦେରି ବେ'ଗି ଆସିବୁ, ବାବୁଠା ପସ୍...

ମିଚ୍ଛୁ—କାମ କେ ଯାଏ ଗଲା ପଧାନେ ?

ଖଲୁ—ନାଇଁ, ସଇଲଣି ଯେ, ତା ନାଁ କଣ କି ଯୀରି ଖେଡଡ଼ି ମାମଲତ ଖତମ—ବାକ ଖାଲି ତା ନାଁ କଣକି ଭିଅଣ୍ଡଠା ଉଖରି ଦେଲେ ପତର ପଡ଼ିବ ।

୯ଗଡ଼ି—ଆଉ...ଶାଙ୍କର ବସ୍ତ୍ରଦ କରିଥିଲେ ପସ୍ ?

ଖଲୁ—ହେଃ ହେଃ ହେଃ—ଆଜ୍ଞା—ତା ନାଁ କଣ କି ସେ ଆଉ କେତେ ଦଣ୍ଡ—ଆମ୍ବ କଠା ସରିଛି—ଖାଲି ଟିକିଏ ହାଣ୍ଡିରେ ତା ନାଁ କଣକି ଋତ୍ତୁ ଘୁଡ଼େଇ ଦେଲେ କାମ ଫତେ ( ପାଠିକରି ) ମଙ୍ଗୁଳିଆ କିରେ—ତା ନାଁ କଣ କି କଦଳୀ ପତର କାଠିବାକୁ କିଏ ଗଲା ( ସାଧାରଣ ସ୍ୱରାରେ ) ମାହାପାତ୍ରେ, ବାବୁ ଆଇଲେ ନାଇଁକି ?

ନକଡ଼ି—ବାବନ ପଡ଼ିହାରୀ ରଇଛନ୍ତି ପା,' ତାଙ୍କୁ ସାଙ୍ଗରେ ଘେନି ଆସିବେ ।

ଖଚ୍ଚୁ—ହଉ, ହଉ, ତାହେଲେ ତାନାଁକଣଙ୍କ ଆସୁଥିବେ ।
ଭବନନା, ତାନାକଣଙ୍କ ଠାକୁରାଣୀଙ୍କ ମାଳଣା ବଢ଼ ଲାଣି ତ ?

ଭବନ—କେତେବେଳୁ କି—ନାଟ ସୁରୁ ହୋଇ ନ ଥେଲା ପା' ସଇଲାଣି ପଧାନେ—

ଖଚ୍ଚୁ—(ନେପଥ୍ୟକୁ ଲକ୍ଷ୍ୟ କରି) ଗଣିଆନା, ଏଣିକ କାମ ବଢ଼ିଲାଣି, ତାନାଁକଣଙ୍କ ହାତ ଫରୁଡ଼ କର । ପାନ ମସଲା ପାଇଁ ଗଲା ଯେ ତା ନାଁ କଣଙ୍କ ଚଇତନଆଠା ସେଇଆଡ଼େ ଲଖିଲା । ( ବଡ଼ ପାଟିରେ ) ଚଇତନଆ, ଚଇତନଆରେ—

( ଡାକ ଡାକି ଚାଲିଗଲା )

(ଏତକି ବେଳେ ବାବନ ପଢ଼ିହାରୀଙ୍କ ସାଙ୍ଗରେ କଥାବାର୍ତ୍ତା କରୁ କରୁ ବାହିନୀପତି ପହଞ୍ଚିଲେ । )

ବାହିନୀପତି—ପାଙ୍କାପାଣି ଛଡ଼ା ସବୁ କାମ ସରିଲାଣି ପରା ।

(ସମସ୍ତେ ଉଠି ନମସ୍କାର କଲେ, ବସିବାକୁ ଆସନ ଦେଲେ)

ମିଚ୍ଚୁ—ଆଜ୍ଞା ହଁ, ଅଳେକ ବାହୁଡେ ସବୁ କାମ ସରିଚ୍ଛି । ମାହେକ ଆପଣଙ୍କ ଅପେକ୍ଷା ଥିଲା । (ନେପଥ୍ୟ ଆଡ଼କୁ ପାଠିକରି) ହଇ କି ହେ ପଧାନେ, ବାବୁ ଅଇଲେଣି ।

ଖଚ୍ଚୁ—(ନେପଥ୍ୟରୁ) ବାବୁ ଆଇଲେଣି (କହି କହି ପହଞ୍ଚିଲେ) ଆଜ୍ଞା ଓଳକି, ଇ'ଲାଗେ ମୁଁ ତ ଆପଣଙ୍କ କଥା ପଚ୍ଚାରୁଥିଲି ; ମହାପାତ୍ରେ କହିଲେ, ବାବନ ଗୋଟେଇ ରଇଛନ୍ତି—

ବାବନ—ପଧାନେ, ତମ ନାଟ ପିଲାଏ କଣ ନାଚ୍‌କଲେ ବାବୁ ତ ଦେଖି, ପାରି ନଲ ନାହିଁ ।

ଖଚ୍ଚୁ—ଦେଖିବେ, ନିଶ୍ଚେ ଦେଖିବେ । ( ନେପଥ୍ୟକୁ ) ଆରେ ଗୋକୁଳା, ବଇଁଶିଆ, ଅରକ୍ଷିତା, କୈରିତନଆ, ତମେଇ ସେଇ

ଗୀତ ଗଣ୍ଡୁଷ ଧରି ଆଉ ଯେବେ ନାଚ କରିବଟି ବାପ—
( ଦୁଇ ଗାଁର ସେହି ଟୋକା ଦଳ ଗୀତଟିକୁ ଗାଇ ଗାଇ ନାଚି ନାଚି ଯିବେଁଲୋ)

ପୁ—ଧିକ ଧିକ ଧିନ ଧିନ୍‌ତା ଧିନ

ସ୍ତ୍ରୀ—ଧିକ ଧିକ ଧିନ ଧିନ୍‌ତା ଧିନ

ପୁ—ଧିକ ଧିକ ଧିନ ଧିନ୍‌ତା ତନ ଥିଲଙ୍ଗ ଦଧିଘନ ତା, ଥିଲଙ୍ଗ ଦଧିଘନ ତା, ଥିଲଙ୍ଗ ଦଧିଘନ ଧା ।

ଉଭୟେ—ସୁଖର ଦିନ ଅଇଲା, ମଉଜ ଦିନ ଅଇଲା ଚଷାର ଝିଅ ଲୋ, ଓଡ଼ିଆ ବୋହୂଲୋ, ସିନ୍ଦୁର କଲି, ଟିକ୍‌ଲି ଭଲି ଢୋକି ଠାଣି ଦେ ।

ସ୍ତ୍ରୀ—ଲୋଟଣୀ ଗହକୁ ଶୋଭା ଝୁମୁ ଝୁମୁ ନୂପୁର ଲଗା ଯୋଡ଼ିକାଠି ଗୁଞ୍ଜି ଜାଇଫୁଲ ଲୋ, ଦ୍ୱାର ଗଉଣ ମୂଳେ ତୁଳସୀ ଚଉଁରା ମୂଳେ ନଡ଼ ପାଣିଦେ ।

ପୁ—ବାର ମାସର ତେର ଯାତ,
ଧରମ କରମ ଓଷା ବରତ ଜାତ,
କରୁଥା' ସେତେ ବୁଦ୍ଧି ଲହଡ଼ା ସୁନା ସେନ୍ତି,

ସ୍ତ୍ରୀ—ଓଳଅ ! ଅମାର ଢୋଲି, ସବୁ ରହିଛି ମୁଁ ରି ଯୋଗୀ ଉକାସି ଥାଳେ ମନ ଜାଣି ଦେ'...ମନ ଜାଣି ଦେ, । ୨ ।

ହେବନା—ଆଜ୍ଞା, କେତେଣି ଠାଆ ସଜଡ଼ା ହେଲାଣି ।

କାହ୍ନିଲକତ—ହଉ ହଉ, ଡାଣିଏ କୁଲ–ଆସ ମହାପାତ୍ରେ, ସାନ୍ଧାଏ ଉଠେ—ଉଠ, ଉଠ । ପଡ଼ିଥାସିଏ, ଅଉ ବାଳମ୍ବ କାହିଁକି ? ( ଯାଉଁ ଯାଉଁ କେଉଟି ରଙ୍ଗମଞ୍ଚର ଦର୍ଶକଙ୍କ ପ୍ରତି ଲକ୍ଷ୍ୟକରି କହିଲେ ) ଆଜ୍ଞା ଆପଣମାନେ କିଛି ମନେ କରିବେ ନାହିଁ ।

ପାଣିଙ୍କର ସହଯୋଗୀମାନଙ୍କର ଧୀତ୍ୟାପେ. ଏହି ସମ୍ଭାର ଉତ୍ସବ । ତେଣୁ ନେପଥ୍ୟରେ ଭୋଜନ ଏବଂ ଶବାସ୍ତୁର ନିର୍ଦ୍ଦେଶ । ( ସମସ୍ତେ ଏକ ସଙ୍ଗରେ ଉଠି ବସନ୍ତି ସନ୍ତୁବାରେ ଗୋଟିକ ପରେ ଗୋଟିଏ ନିଷ୍କ୍ରାନ୍ତ ହେବେ—ଧୀରେ ଧୀରେ ପଡ଼ିବା…

ଯବନିକା

